# ଯୌବନ ସାଥି


ଲେଖକ

ଶ୍ରୀ କରୁଣାକର ମହାନ୍ତି, ବି. ଏ., ସି. ଟି.

ଶିକ୍ଷକ, ଗଦାଧର ହାଇସ୍କୁଲ, ପୁରୀ



ପ୍ରକାଶକ—ଶ୍ରୀ ବିଶ୍ୱମୋହନ ମହାନ୍ତି

ପ୍ରଥମ ସଂସ୍କରଣ

୧୯୫୪

ମୂଲ୍ୟ—ଟ ୧।



**ବିପ୍ଳବୀ—**

ଦୁର୍ଭ ଯାର କରଣୀ ବଳେ
ଅଗରେ ଲଭଇ ହତ୍ୟା
ଛନ୍ଦେ ଛନ୍ଦେ ଝଂକାର ଉଠେ
ଘୋର ବିପ୍ଳବ ବାତ୍ୟା
ସଂସାରେ ରଚ ସତ୍ୟ
ନର-ମନ ଗଢ଼ି ଶୁଦ୍ଧ ଶାନ୍ତ ସରଗ କରେ ଏ ମର୍ତ୍ତ୍ୟ ?

# ଯୌବନ ସାଥି



## ପ୍ରଥମ ପରିଚ୍ଛେଦ

ଶ୍ରୀଫଳ ପ୍ରତ୍ୟେକ ଶୁଭ କାର୍ଯ୍ୟରେ ଲୋଡ଼ା । ତେଣୁ ବୋଧହୁଏ ସୃଷ୍ଟିକର୍ତ୍ତା ତାହାର ସ୍ଥାନ ସର୍ବୋଚ୍ଚ ବୃକ୍ଷର ଶୀର୍ଷ ଦେଶରେ ରଖିଛନ୍ତି । ବାସ୍ତବିକ ବ୍ରାହ୍ମଣ ଶାସନମାନଙ୍କର ନଡ଼ିଆ ବାଗର ଦୃଶ୍ୟ ଅନେକ ଦୂରରୁ ପଥିକର ମନରେ ଅପୂର୍ବ ପ୍ରୀତି ସଞ୍ଚାର କରିଥାଏ । ସତେ ଯେପରି ବୃକ୍ଷଗୁଡ଼ିକ ମଣି ମାଣିକ୍ୟର ସ୍ତମ୍ଭ, ଚଉପାଖକୁ ବାହୁଙ୍ଗାଗୁଡ଼ିକ ମେଲେଇ ହୋଇଯାଇଛନ୍ତି, କିଏ ସିଧା ଉଠିଛି ତ କିଏ ତଳକୁ ନଇଁ ପଡ଼ିଛି । ହରିତ ବର୍ଣ୍ଣର ପତ୍ରଗୁଡ଼ିକ ବାହୁଙ୍ଗା ଦେହରୁ ଝାର ପରି ଛୁଟିଛନ୍ତି, ବନ୍ଧିବାକୁ ଅସଂଖ୍ୟ ଛୋଟ ବଡ଼ ବୃକ୍ଷ— ଯେଉଁମାନେ ଶତ୍ରୁତା ଆଚରଣ କରି ନାରିକେଳ ବୃକ୍ଷଠାରୁ ଛଡ଼ାଇ ନେବାକୁ ଚାହାଁନ୍ତି ତାର ବାୟୁ ଓ ଆଲୋକରେ ଏକାଧିପତ୍ୟ । ଝୁଣା ଶୁଖିଲା, କାରପଣିଆ, ଅଧାଢ଼ୁଆ, ନାଳିଲଗା, ଶୁଆପଚିଆ, ଗେଣ୍ଡାଳିଆ ପ୍ରଭୃତି କେତେ ରଙ୍ଗର, କେତେ ଢଙ୍ଗର ନଡ଼ିଆ ପେଣ୍ଡାମାନଙ୍କରେ ନାଚୁ ହୋଇଛି । ସେଗୁଡ଼ିକଙ୍କର ପ୍ରକୃତ ଆଗନ୍ତୁକ ପଥିକମାନଙ୍କ ପ୍ରତି ଭିତର ନରମ ବାହାର ଟାଣ । କ୍ଷୁଧିତ ଓ ତୃଷାର୍ତ୍ତମାନଙ୍କର ଆଶା ଏକାଧାରରେ ମେଣ୍ଟାଇ ପାରେ ସେହି ଶ୍ରୀଫଳ ।

ଏହିପରି ନଅଗଡ଼ର ମାଳ ମଧ୍ୟରେ ଷୋଳ ଶାସନରୁ ଗୋଟିଏ—ନାଁ ତାର ଅଟେ ରାମଚନ୍ଦ୍ରପୁର । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ କେଶରୀ ବଂଶର ଶ୍ରେଷ୍ଠ ନରପତି ଯଯାତି କେଶରୀ ଉତ୍କଳର ତତ୍କାଳୀନ ରାଜଧାନୀ ଯାଜପୁରରେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ପାଇଁ କାନ୍ୟକୁବଜରୁ ଯେଉଁ ଦଶହଜାର ବୈଦିକ ବ୍ରାହ୍ମଣ ଆଣାଇଥିଲେ, ସେମାନଙ୍କର ବସବାସ ପାଇଁ ଉତ୍କଳର ନାନା ସ୍ଥାନରେ ଭୂମି ବୃତ୍ତି ଦାନ କରିଥିଲେ । ସେମାନଙ୍କର ବସବାସ ସ୍ଥାନଗୁଡ଼ିକ ଆଧୁନିକ ବ୍ରାହ୍ମଣ ଶାସନ ନାମରେ ପରିଚିତ । ଆମର ଉଲ୍ଲିଖିତ ଶାସନଟି ବୋଧହୁଏ ଉତ୍କଳର ଜନୈକ ପ୍ରତାପଶାଳୀ ରାଜା ରାମଚନ୍ଦ୍ରଙ୍କ ନାମରେ ନାମିତ ।

କାଳର ପ୍ରବାହରେ ଶାସନୀ ବ୍ରାହ୍ମଣମାନେ ଅନ୍ୟାନ୍ୟ ଉତ୍କଳୀୟ ବ୍ରାହ୍ମଣ ତଥା ବ୍ରାହ୍ମଣେତର ଜାତିର ଲୋକମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରୁଥିଲେ, ଯେହେତୁ ସେମାନେ ଦେଶପାଳଙ୍କର ନମସ୍ୟ ଥିଲେ । ସେମାନଙ୍କର ଏତେ ଦୂର ଆଧିପତ୍ୟ ଥିଲା ଯେ, କାଳକ୍ରମେ ଆଧିପତ୍ୟ ଔଦ୍ଧତ୍ୟରେ ପରିଣତ ହେଲା । ସେମାନଙ୍କ ମଧ୍ୟରୁ ଅନେକ ସାମନ୍ତ ବ୍ରାହ୍ମଣ ନାମରେ ଅଭିହିତ ହୁଅନ୍ତି । ଶାସନୀ-ମାନେ ପିଣ୍ଡା ଉପରେ ବସିଥିଲେ କେଉଁ ଇତର ଜାତିର ଲୋକ ଅଣ୍ଟା ମୁଣ୍ଡ ନ ନୁଆଁଇ ଓ ଯୋଡ଼ ହସ୍ତକୁ ଭୂଇଁରେ ଘୋଷାରି ଘେଷାରି ନ ନେଇ ଗାଁ ମଝିରେ ପାରି ହେବାକୁ କଳ୍ପନା କରିବ ? ଦୋଳମୁକ୍ତ ହୋଇଥିବା ବର କନ୍ୟା କୌଣସି ଶାସନ ପାରି ହୋଇ ଅନ୍ୟ ଗ୍ରାମକୁ ଯିବାକୁ ଥିଲେ, ଗାଁ ବାହାରେ ଖେତବାଡ଼ି ନଈ ନାଳ ଦେଇ ପାଲିଙ୍କି ସବାରୀ ଓ ବାଜା ବଜନ୍ତ୍ରୀ ନେଇ ଯିବାକୁ ପଡ଼ିବ । ନଚେତ୍ ବରକନ୍ୟାଙ୍କୁ ଗାଁର ପଧାନଙ୍କ ପାଖରେ ଶୂଦ୍ର-ଛାୟା-ପାତ ରୂପକ ବ୍ରହ୍ମପାପ ପାଠର ପ୍ରାୟଶ୍ଚିତ୍ତ ପାଇଁ କିଛି ଦକ୍ଷିଣା ଦାଖଲ କରି, ସବାରୀ ପାଲିଙ୍କିରୁ ଓହ୍ଲାଇ ଗାଁ ମଝିରେ ପାଦରେ ଚାଲି ଚାଲି ପାରି ହେବାକୁ ପଡ଼ିବ । ଆଉ ମଧ୍ୟ କାହା ଜିଭରେ ହାଡ଼ ଓ ନେଡ଼ିରେ ବାଳ ଅଛି ଯେ, ମହଣ ଛତାଟାଏ ଧରି, ଫେର ଲମ୍ବାଇ, ପାଣ୍ଡୋଇ ମାଡ଼ି

ଗାଁ ଭିତରେ ପଶି ବୁଲିପିବ ! କି ନ ହେଲ କି, ଠୋଠା ବୁପଡ଼ା, ହୁମ୍‌ଦାମ୍ ବାଧା, ଲୁଣ୍ଠନ ଗୋଇଠା ପାଇ ବାହାପାଇଁ ବିଧାନ ଅଛି ଯେ ? ଏତ ଗଲା ଶୂଦ୍ର ବା ଅନ୍ତ୍ୟଜ ଜାତିର ଲୋକଙ୍କ ପାଇଁ ଶାସନୀମାନଙ୍କର ଦଣ୍ଡ-ବିଧି ଅଲଗା ଲେଖିଛି ଦଫା । ଏହାଛଡ଼ା ସେମାନଙ୍କର ସାମାଜିକ ଯଥା ବାସ୍ତବ ବା ଅବାସ୍ତବ, ଯାହା କହନା କାହିଁକି, ନିଷ୍ଠୁରତା ମଧ୍ୟ ଦେଇ ଗଢିକରି ଆସିଅଛି । ବାପଥିଲା ପୁଅ ନାଁଟି ରଖି ପାରିବ ନାହିଁ, ରଖିଲେ ରଖିବ ନିଶ ସାଙ୍ଗକୁ ଦାଢ଼ି । ଚେତନ ତୁଟି ତ ପ୍ରତ୍ୟେକ ବ୍ରାହ୍ମଣ ରଖିବାକୁ ବାଧ୍ୟ, କିନ୍ତୁ ଖଣ୍ଡେ ପିନ୍ଧା, ଖଣ୍ଡେ ଦୋସଡ଼ା ଓ କାନ୍ଧରେ ଖଣ୍ଡେ ଓଢ଼ାଗାମୁଛା ଛଡ଼ା ଯେ କଞ୍ଚୁଆ ବା ଅଙ୍ଗୀ ଲଗାଇଲା, ସେ ହେଲା ସମାଜରୁ ବାସନ୍ଦ ।

ଶିକ୍ଷା ଦିଗରେ ମଧ୍ୟ ସେହିପରି ଅଶେଷ କଟକଣା ଅଛି । ଗାଁ ଚଉପାଢ଼ୀରେ ପଢ଼ିଲେ ଓଝାଙ୍କ ପାଖରୁ ପାଠଶାଠ ଶିଖିବାକୁ ପଡ଼େ । ଚଢ଼ିସଜାରୁ ନତ୍ୟକର୍ମ ଶେଷକରି ଶୂନ ହେବାଠାରୁ ଆରମ୍ଭକରି, କେହି କୋଠଲଖଡ଼ି, କେହି ଦୁଧଖଡ଼ି ବା କିଏ ଶିଲଟ ପେନସିଲ୍ ଧରି, ଅ, ଆ, ସତରଫଳା, ପଣକିଆ, କଡ଼ାଗଣ୍ଡା, ପାହୁପଣକିଆ, କାଣିକଷ୍ଟା, ଓଡ଼ାଙ୍କ, ମେଲଙ୍କ, ଶେଷ ଧି ଘୋଷିବାରେ ଲାଗିଯାନ୍ତି । ଛୁଟି ଲେଉଟିଲେ ପୁଣି ଛାତ୍ରମାନେ ଆସି, ଓଝାଙ୍କ ଆଗରେ ଓ କଡ଼ରେ ବସି, ଗୋପୀଭାଷା, ବାରମାସୀ କୋଇଲି, ରାମାୟଣ, ମହାଭାରତ, ଭାଗବତ, ଦାର୍ଢ୍ୟତାଭକ୍ତି ଆଦି ପଢ଼ନ୍ତି । ଚଉପାଢ଼ୀରୁ ଉତ୍ତୀର୍ଣ୍ଣ ହେଲାପରେ, ଯେଉଁମାନଙ୍କର ଅବସ୍ଥା ସ୍ୱଚ୍ଛଳ ଥାଏ, ସେମାନେ ସଂସ୍କୃତ ଟୋଲ୍‌କୁ ଯାଇ ଅମରକୋଷ, ବ୍ୟାକରଣ, ସାହିତ୍ୟ, କାବ୍ୟ, ନାଟକ, ଉପନ୍ୟାସ, ବେଦ, ଉପନିଷଦ ଆଦି ପାଠକରି ଦିଗ୍‌ବିଜୟୀ ପଣ୍ଡିତ ହେବାକୁ ଆଶା ପୋଷଣ କରି-ପାରନ୍ତି ।

ମାତ୍ର ବେଙ୍ଗ କହେ ବେଙ୍ଗୁଲୀ ଲୋ ମହୀ କ୍ଷଣ କ୍ଷଣକେ ଆନ । ତ୍ରୟୋଦଶ ଶତାବ୍ଦୀରୁ ଆସି ଯେତେବେଳେ ଅଷ୍ଟାଦଶ ଶତାବ୍ଦୀରେ

ପଦାର୍ପଣ କଲା, ଭାରତର ଭାଗ୍ୟରବି ଅସ୍ତମିତ ହେଲେ, ସେ ରାମ ଗଲେ କୁଅଡ଼େ, ରହିମ ଗଲେ କୁଆଡ଼େ ।

ଭାରତର ଲୋକେ ହେଲେ କୁଆଡ଼ୁଆ । ନୈତିକତା ଓ ଅଧାର୍ମିକତା ଡୁବାଇ, ଭ୍ରାତୃ ବିବାଦ ରୂପକ ବିଷରେ ଜର୍ଜ୍ଜର ହୋଇ ଅମୃତ ସୁଖ, ସୌଖ୍ୟ ଓ ସୌଭାଗ୍ୟ ତ୍ୟାଗକରି ନାନା କୁଟ କାପଟ୍ୟ ଆଚରଣ କଲେ । ତେଣୁ ସାତସମୁଦ୍ର ତେର ନଈ ପାରହୋ'ଇ ଆସିଥିବା ଇଂରେଜ ବଣିକମାନଙ୍କର ଐନ୍ଦ୍ରଜାଲିକ ଜହ୍ନୁ ଜହ୍ନୁ ସ୍ପର୍ଶ ବେପାରରେ, ଭାରତବାସୀଙ୍କୁ ଲାଗିଲା ଭେଳିକି । ବେପାର ବଣିକରୁ ରାଜ୍ୟାଧିକାର, ରାଜ୍ୟଶାସନରୁ ଇଂରାଜୀ ଶିକ୍ଷା ଦୀକ୍ଷା, ରୀତି ନୀତି, ସଭ୍ୟତା ସଂସ୍କାର ଆଦି ଏ ଦେଶରେ ଇଂରେଜମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ହେଲା । ଦେଶସାରା କ୍ରମେ କ୍ରମେ ଇଂରାଜୀ ଭାଷା କୋର୍ଟ କଚେରୀମାନଙ୍କରେ ପ୍ରଚଳିତ ଭାଷା ରୂପେ ଠିଆ ହେଲା । ଲୋକେ ବାଧ୍ୟ ହୋଇ ଜୀବିକା ନିର୍ବାହ ପାଇଁ ଇଂରାଜୀ ପଢ଼ିବାକୁ ଲାଗିଲେ ଓ ଇଂରେଜ ଶାସକ ମାନଙ୍କର ବେଶଭୂଷା, ଖାଦ୍ୟପେୟ, ଆଚାରବ୍ୟବହାର, ଧର୍ମ ଓ ସଂସ୍କୃତି ଅନୁକରଣ କଲେ । କଥାରେ ଅଛି, ଦେଖା ଶିଖା ଓଳଗା । ପ୍ରବହମାନ ଅବହାର୍ଯ୍ୟାରୁ ଓଳଗା ରକ୍ଷା ପାଏ କେତେବେ ?

କ୍ଷମା କରିବେ, ପାଠକମାନଙ୍କୁ ଏହା ଅବାନ୍ତର ଲାଗିପାରେ । ମାତ୍ର ଲେଖକ ଦୋଷ ମାଗି ନେଉଛି । ବିଷୟର ଅବତାରଣା ପୂର୍ବରୁ ସମସାମୟିକ ପରିସ୍ଥିତିର କିଞ୍ଚିତ ଆଭାସ ନ ଦେଲେ, ଆପଣମାନଙ୍କର ତାହା ବୋଧଗମ୍ୟ ହୋଇ ନ ପାରେ ।

ଶ୍ରୀ ଶ୍ରୀରାମ ମିଶ୍ର ରାମଚନ୍ଦ୍ରପୁର ଶାସନର ପ୍ରାଚୀନ ଆଭିଜାତ୍ୟ ବଶିଷ୍ଠ ଗୋତ୍ରିଏ ବୈଦିକ ସାମନ୍ତ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଭକ୍ତରାମ ମିଶ୍ର ଗ୍ରାମର ଜଣେ ଧନାଢ଼୍ୟ ବ୍ୟକ୍ତି । ଆଖ ପାଖ ପଞ୍ଚକୋଶ ଅବାନ୍ତରେ ତାଙ୍କୁ କିଏ ନ ଜାଣେ, ଏପରି କଥା ନୁହେଁ । ପାଖିଟାରେ ବସନ୍ତି, ପାଞ୍ଚକଥା ଶୁଣନ୍ତି, ନ୍ୟାୟ

ନିଷ୍ପାପ କରନ୍ତି, କାହାର ବହ୍ମାବ୍ରତ, କାହାର ଶୁଦ୍ଧ ଶ୍ରାଦ୍ଧ, କାହାର ରୋଗ ବୈରାଗ୍ୟ ବା କାହାର ଦୈବୀ ଦୁର୍ଘଟଣାରେ, ଖୁବ କମରେ ଦେଢ଼ି ସୁଧରେ ଟଙ୍କା କରଜ ଦେଇଥାନ୍ତି । ଗ୍ରାମଗଣ୍ଡାରେ ଯଦି କୌଣସି ଜଳବୁଡ଼ି ଓ ବିଷଖିଆ ଅପମୃତ୍ୟୁ ଘଟେ, ତାହା ସାମାନ୍ୟ ଶହାଧିକ ଟଙ୍କା ଜୋରିମାନା ନେଇ ସମ୍ଭାଳି ନିଅନ୍ତି । ହେଲେ, ଗୋ-ହତ୍ୟା, ଭ୍ରୁଣହତ୍ୟା, ପାପଗର୍ଭ ଆଦି ବିଷୟରେ ବଡ଼ କଠୋର ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦେଇଥାନ୍ତି ଏବଂ ହୋମ, ଯଜ୍ଞ, ଯଜନ ଯାଜନ ବିଧିମୁତାବକ ସମ୍ପନ୍ନ କରିବାକୁ ନିର୍ଦ୍ଦେଶ ଦେବା ହେଲା, ତାଙ୍କର କୌଳିନ୍ୟର ନମୁନା । ବ୍ରାହ୍ମଣ ହୋଇ ଯେ ସନ୍ଧ୍ୟା ତର୍ପଣ ନ କଲା, ଭୋଜନବେଳେ ଚଳୁ ନ କଲା, ମଳମୂତ୍ର ତ୍ୟାଗ କଲାବେଳେ କାନରେ ପଇତା ନ ଘେନିଲା ବା କଥା କହିଲା, ସେ ହେଲା ତାଙ୍କର ପରମ ଶତ୍ରୁ ।

ସୁତରାଂ ସେ ପୁତ୍ର ରାମରାମକୁ ଠିକ ତାଙ୍କରି ଛାଞ୍ଚରେ ପିଲାଦିନୁ ଗଢ଼ି ଆଣିଥିଲେ । ରାମରାମ ଯେ ବାପର ପିଲା, ସିଂହର ଛୁଆ କଣ ଶୃଗାଳ ହେଲାଣି ? ବାସ୍ତବିକ ରାମରାମଙ୍କ ଗତିବିଧିରୁ ଯେ କୌଣସି ଲୋକ ଠଉରେଇ ନେବ, ସେ ଜଣେ ଅଗ୍ନିହୋତ୍ରୀ ନୈଷ୍ଠିକ ବ୍ରାହ୍ମଣ । ବ୍ରାହ୍ମ ମୁହୂର୍ତ୍ତରେ ଉଠି ସ୍ନାନାଦି ନିତ୍ୟକର୍ମ ସମାପନ କରିବା ପରେ ସେ କକସ୍ୱ ଦୁଇଘଣ୍ଟା ଗ୍ରାମପ୍ରାନ୍ତସ୍ଥିତ ଶିବ ମନ୍ଦିରରେ ପନ୍ନୀ, ବେଲପତ୍ର, କୁଶ, ତମ୍ବାଗଡ଼ୁ ଓ ଗୋଟିଏ ଝକଝକ ପିତଳ ଥାଳିଆରେ କେତେକ ଧଳା ଲାଲ ଫୁଲ, ଚନ୍ଦନ ଓ ଗୋଟିଏ ଘଣ୍ଟିଧରି ବଡ଼ ଶୁଦ୍ଧ ପୂତ ଭାବରେ "ଓଁ ଶିବ ଶମ୍ଭୁ........," ଆଦି ମନ୍ତ୍ର ବଜ୍ର-ନିର୍ଘୋଷ-ଉଚ୍ଚାରଣ ଧ୍ୱନି ଦ୍ୱାରା ବାୟୁମଣ୍ଡଳକୁ ଝଙ୍କୃତ କଲାବେଳେ ଯେ କୌଣସି ନାସ୍ତିକ ମଧ୍ୟ ଐଶ୍ୱରଧର୍ମ ପ୍ରତି ଆକୃଷ୍ଟ ହେବା ବିଚିତ୍ର ନୁହେଁ । ତାଙ୍କର ପରିବାର ମଧ୍ୟ ସେହିପରି ସାତ୍ତ୍ୱିକ ଭାବରେ ସମ୍ପନ୍ନ ହୋଇଥାଏ । ପତ୍ନୀ ସୁଲକ୍ଷଣା ଦେବୀ ମଧ୍ୟ ସାଧ୍ୱୀ, ପତିବ୍ରତା । ସ୍ୱାମୀଙ୍କର ଭୋଜନ ଦି ଶେଷ ନ ହେବା ପର୍ଯ୍ୟନ୍ତ ଜଳ ଗ୍ରହଣ କରନ୍ତି ନାହିଁ । ଏହି ଧର୍ମ-ପରାୟଣ ଦମ୍ପତି ବୃଦ୍ଧ ଭକ୍ତରାମ ମିଶ୍ରଙ୍କର ଯଥୋଚିତ ସେବା ଶୁଶ୍ରୂଷା ଦ୍ୱାରା ଶ୍ରଦ୍ଧାଭାଜନ

ହୋଇଛନ୍ତି । ରାମରାମ ଜମିଦାରୀ ଓ ମହାଜନୀ କାର୍ଯ୍ୟ ଆଦି ନେଇ ବ୍ୟସ୍ତ ଥିବାରୁ ପିତାଙ୍କୁ ଶାନ୍ତି ଓ ବିଶ୍ରାମ ଦେଇ ପାରୁଥିଲେ । ମାତ୍ର ପରି-ବାରର ସୁଖ-ଶାନ୍ତି-ପୁଷ୍ଟିକୁ ଗୋଟିଏ ଚିନ୍ତା-କୀଟ ଅହରହ ଦଂଶନ କରୁଥିଲା । ଯେତେ ଧନ, ଦଉଲତ ଓ କ୍ଷମତାରେ ଗଢିଲେ କଣ ହେବ, କୁଳ ରକ୍ଷା କରିବାକୁ ଗୋଟିଏ ପୁତ୍ର ଅଭାବରେ ପରିବାରର ସମସ୍ତେ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥିଲେ । ଲୋକେ କହନ୍ତି, ଦେବ ଦେବ ମହାଦେବ, ଦେବତାମାନଙ୍କ ମଧ୍ୟରୁ ଚଞ୍ଚଳ ସ୍ୱଭାବ ଶୁଣନ୍ତି । କିନ୍ତୁ କାହିଁ ? ରାମରାମଙ୍କୁ ତ ଅସି ପୂରଣ ପାଖ ଆଖ ହେଲା, ଦୀର୍ଘ କୋଡ଼ିଏ ବର୍ଷ ଧରି ସେ ଶିବ ଭକ୍ତିରେ ତନ୍ମୟ, ଶିବ କଣ ଶୁଣିଲେ ନାହିଁ । କିନ୍ତୁ ରିଷ୍ଟ ଖଣ୍ଡନ ନ ହେବା ଯାଏ କଣ ଇଷ୍ଟ ଶୁଣିଲେଣି ?

ଦିନ ପରେ ଦିନ ଗଡ଼ି ଚାଲିଲା । ମିଶ୍ର ପରିବାରର ମଧ୍ୟ ମନସ୍ତାପ ଦିନକୁ ଦିନ ବଢ଼ିବାକୁ ଲାଗିଲା । ରାମ ରାମ ମିଶ୍ରେ କେତେ ହୋମ ଯଜ୍ଞ କଲେ, ବ୍ରାହ୍ମଣ ଭୋଜନ କରାଇଲେ, ଦାନ ଦକ୍ଷିଣା ଦେଲେ ଓ ବ୍ରାହ୍ମଣମାନେ ଶେଷରେ ମିଶ୍ର ଦମ୍ପତିଙ୍କ ମସ୍ତକରେ ପାଦଧୂଳି ଦେଇ ଆଶୀର୍ବାଦ କରିଗଲେ । ସତେ ସେମାନଙ୍କର ମନସ୍କାମନା ପୂର୍ଣ୍ଣ ହେବ ! ମିଶ୍ରଙ୍କ କୁଳ ଉଜ୍ଜ୍ୱଳ କରିବାକୁ ଗୋଟିଏ ପୁତ୍ର ସନ୍ତାନ ଜାତ ହେବ ! ମିଶ୍ର ପତ୍ନୀ ସୁଲକ୍ଷଣାଙ୍କର ମଧ୍ୟ ଜ୍ୟୋତିଷମାନଙ୍କ ଉପରେ ଗୋଟାଏ ବଡ଼ ବିଶ୍ୱାସ । ତାଙ୍କର କୁଳ-ଗ୍ରହାଚାର୍ଯ୍ୟ ହରି ନାହାକ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କର ଜାତକ ଦେଖି ବହୁତ ସାଧୁ କହି ଯାଇଛନ୍ତି, ତାଙ୍କର ସ୍ୱାମୀଙ୍କୁ ଯେମିତି ଏକବିଂଶ ବର୍ଷ ପୂରି ଦୁଇମାସ ହେବ ଏବଂ ବୃହସ୍ପତିରେ ଶନି ଅନ୍ତର ଓ ରବି ପ୍ରତ୍ୟନ୍ତର ହେବ, ସିମିତି ସୁଲକ୍ଷଣା ଦେବୀଙ୍କର ଗର୍ଭ ଉଦୟ ହେବ ଓ ସେହି ଗର୍ଭରେ ନିଶ୍ଚୟ ପୁତ୍ରଜାତ ହେବ, ନ ହେଲେ ସେ ଜଉତିଷ କଣ ? ପାଞ୍ଜିପତ୍ର ଫୋପାଡ଼ି ସେହି ଦିନଠାରୁ ମୋଟ ବନାଇବେ, ତେବେ ସୁଲକ୍ଷଣାଙ୍କୁ ଏତିକି କରିବାକୁ ହେବ,—ଗୋଟିଏ ଠିଆପାଲି କରାଇ ସତ୍ୟପିରଙ୍କୁ ଯାଚଣା କରି ପାଲିବାଲା ଗାୟକଙ୍କ ହାତରୁ ଗୋଟିଏ ମୁଦାମ, ଅର୍ଥାତ୍ ପାଞ୍ଚଗୋଟି ଗୋଟାପାନ ଉପରେ

ଗୋଟିଏ ଗୁଆ, ଗୋଟିଏ ପାଚିଲା କଦଳୀ ଓ ସଙ୍ଗାତେଏ ପଇସା, ପୂଜା ଶେଷ ହେବା ମାତ୍ରେ ତାଙ୍କୁ ଗ୍ରହଣ କରିବାକୁ ହେବ ଏବଂ ଷୋଳଗୋଟି ପାଲି ପୁତ୍ର ଜନ୍ମହେବା ପରେ ସେ କରିବେ ବୋଲି ସତ୍ୟନାରାୟଣଙ୍କୁ ଯାଚି ଚଉଁର ମୁଠାରେ ଗଣ୍ଠି ପକାଇବେ । ଯାତ୍ରାହେଉ ହରିନାଥବାବୁଙ୍କର ଏ ସମସ୍ତ ଗ୍ରହରିଷ୍ଟ ଖଣ୍ଡନର ବ୍ୟବସ୍ଥାପତ୍ର ଅକ୍ଷରେ ଅକ୍ଷରେ ପାଳିତ ହେଉଥିଲା ବୋଲି ପରେ ମାଇପି ମହଲରେ ବହୁ ଯୁକ୍ତିତର୍କ ହୋଇଥିବାର ଶୁଣାଯାଇଥିଲା । ଆଉ ନାହାକେ ସେଦିନ ସେରେ ଜସୁନା ଚାଉଳ, ଗୋଟାମୁଗ ପାଏ, ଦୁଇବୁଦା ସାରୁ, ସୁରିଗୋଟା ବାଇଗଣ, ବନ୍ତଳକଦଳୀ ଏକଗୋଟା ଲୁଣ ଅଢ଼େଇ ତୋଳା, ସୋରିଷ ଲଙ୍କା ଏକତୋଳା, ଗୁଆଘିଅ ଦୁଇତୋଳା ଓ ପାଞ୍ଚସୁକା ପଇସା ପାଇଥିବାର ଆମ ଗାଁ ଭାଗବତ ଟୁଙ୍ଗୀରେ ନାକଫୋଡ ମହାପାତ୍ର କହିବାର ଆମେ ଖୋଦ ଶୁଣିଥିଲୁ ।

---

# ଦ୍ୱିତୀୟ ପରିଚ୍ଛେଦ

ଏ ମନ ଭାବୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା । ଉଦୁଉଦିଆ ଖରାବେଳ । ବାଉଳ ପୋଇଟିଏ ନାହିଁ । ବିରିଆଡ଼ ଶୁନଶାନ । ବୋଧହୁଏ ଗାଁ ଲୋକ ସମସ୍ତେ ଯେ ଯାହାର ଡାମସାରି ଦେଇ ବୈଶାଖର ଝାଞ୍ଜିରୁ ରକ୍ଷା ପାଇବା ପାଇଁ ଚୁପ୍‌ଚାପ୍ ଘର ଭିତରେ ଆରାମ କରୁଛନ୍ତି । ଅସହ୍ୟ ଗରମ, କିଏ ଲୁଚେ କେତେକେ ? କେହି ସପ ମଶିଣାଟାରେ ପଡି ଓଦା ଗାମୁଛା ଦେହରେ ପକାଇ ବାଞ୍ଚଣାରେ ବିଞ୍ଚି ହେଉଛନ୍ତି ତ, କିଏ କେବଳ ଝାଳରେ ଛଟପଟ ହୋଇ ଏପଟ ସେପଟ ହେଉଛି । କେବଳ ପଞ୍ଚାଏ କବୁଲିଆ ଚୋଟା ଅଖଡ଼ ଘର ଭିତରେ ଲୁସ ଲୁଚୁଡି ଲଗିଛନ୍ତି ଓ ମଝିରେ ମଝିରେ ଗ୍ରାମର ନିସ୍ତବ୍ଧତା ଭାଙ୍ଗି ଜଣାଇ ଦେଉଛନ୍ତି ଯେ, ରାମଚନ୍ଦ୍ରପୁର ଗାଁଟି ଜନଶୂନ୍ୟ ନୁହେଁ ।

ଶତ୍ରୁଘ୍ନ ବାରକର ଡାକ ଶୁଭିଲା, "ଚମ୍ପିଅପା ! ହେ ଚମ୍ପିଅପା ! ମଲୁ କିଲେ ! କାହିଁ ଶୁଣୁନାହୁଁ ମ ? ଖାଉନ୍ଦାଣୀଙ୍କର ପଗ୍ର ବେଦ୍ନ ହୋଇ ଗଲାଣି । ହେଉଛି ଅସୂଚ, ବାହାର ବସିବା ଜାଗାରେ ଅଧଘଣ୍ଟାଏ ହେଲାଣି । ଅଲୋ, ବଉଡିଆ । ସାନ୍ତଙ୍କ ହୁକୁମ, ବସିଲୁ ଠୁ ଉଠି କର ଅ ।" ଚମ୍ପିଅପା କହି ଉଠିଲା, "ତୁଇରେ ଖଣ୍ଡିଆ, ମୁଁ ପଗ୍ର ଉଚୁଣି ଅସୂଚ । ଅଧଘଣ୍ଟାଏ କୁଆଡେ଼ ହେଲା ? ଅଲଣ୍ଡଇସିଆ ଛିଡ଼ାଏ ଖୋଇ ଲସେଇ ଦେଲୁ ନାହିଁ । ସ ଅନ୍ତ ଘର ଯୋଉ ଅକାଡ଼ି ଦାଉଛନ୍ତି ନା, ଖାଲି ଡାକିଲା ମାତ୍ରେକେ ଚର୍ ଚର୍ ହୋଇ ମୁଣ୍ଡ ପକାଇବ । ତୁଉଲୋ ମା, ନ ଗଲେ ଅଉ କଣ ଚୁଟି ରହିବ ?"

ଗାଁ ସାର ମାଇପେ ସ୍ମମସ୍ମମ ମିଶ୍ରଙ୍କ ଭିତର ଅଗଣାରେ ଏକାଠି ହୋଇ ପଡ଼ିଛନ୍ତି । ଚମ୍ପିଅପା ଜସର ପସର ହୋଇ ଧାଇଁ ଆସି ଇନ୍ତୁଡ଼ି ଶାଳରେ ପଶିଗଲା । ଦେଖିଲା, ମିଶ୍ରଙ୍କ ଘରବାଲୀ ଖାଲି ବାଡ଼େଇ ପିଟି ହେଉଛନ୍ତି, ଅଉ କନ୍ଦାଇ ରନ୍ଧାଳ ହେଉଛନ୍ତି । ହୁଟିଆ ମାଠା ସୁଦୁ ଲେସିକଠା, ଶ କମ୍ବଠାଠା ଠିକ୍ କର ଧରିପାରୁନାହିଁ । ଚମ୍ପିଅପା ତା ହୃତଳୁ ଲୁଗା ମୋଡ଼ାଠା ଛଡ଼ାଇ ନେଇ ସୁଲକ୍ଷଣା ଦେବୀଙ୍କ ଅଣ୍ଟାରେ ଜୋର କରି ଅଣ୍ଟୁ ହାବୁଡେ଼ଇ ଦେଇ ରହିଲା ଓ ପୁଅଝିଙ୍କୁ ଜୋରରେ ମଣିଖୁଣ୍ଟ ଧରିବାକୁ କହିଲା । ପୁଅଝି ଘଡ଼ିକେ ପହରକେ କନ୍ଦାଉ ଥାଏ । ଯେତେବେଳେ ଗୋଠାଏ ଖୁବ୍ କଠକଟିଆ ଶୂଳ ଆସିଲା, ଢଗୁସ୍ଵ ମା' ବାହାରେ ଥାଇ ଅନ୍ୟାନ୍ୟ ମାଇପିଙ୍କି କହିଲା, "ଦେଖିଲ ମୁଁ କଣ କହୁଥିଲି, ମନୁସ୍ୱ ପାଣି ଯିମିତି ପେଟରେ ପଡ଼ିଛି, ଦେହ ଭେଦ ହୋଇ କଠକଟିଆ ଶୂଳ ଆସିଲା । ଏଥର ପିଲା ଭୂଇଁରେ ପଡ଼ିଲା ଜାଣ ।"

ବୃଦ୍ଧ ଭକ୍ତସ୍ମମ ମିଶ୍ର ଦାଣ୍ଡ ପିଣ୍ଡାରେ ବସି ବୋହୂର ଘଡ଼ି ଘଡ଼ି କ୍ରନ୍ଦନ ଓ ଯମ ଯନ୍ତ୍ରଣା ଶୁଣି ଖାଲି, "ସ୍ମମ ସ୍ମମ ମନ ସ୍ମମ ସ୍ମମ," ଦଶ-ଟର ବ ାେବଥର କହି ମରୁଲେଣି । ମହାପ୍ରାଣୀଠା କେତେବେଳେ ଉଦ୍ଧାର ପାଇବ, ସେହି ଚିନ୍ତାରେ ଭକ୍ତସ୍ମମ ନିମଗ୍ନ ।

ରାମରାମ ମିଶ୍ରଙ୍କର ପତ୍ନୀଙ୍କ ପ୍ରତି ଅଗାଧ ପ୍ରୀତି ଥିବାରୁ ସ୍ୱୟଂ ରାସଣା, ଗୋଲମରିଚ, ଶୁଣ୍ଠି, ପିପ୍‌ପଳୀ, ଚଇସମ ଓ ରସୁଣ, ନଳିତାପତ୍ର ଆଦି ଆଣିଲେ ପୁଅଟା ସାଷ୍ଟମ ହେବ ବୋଲି ଦଉଡ଼ି ଯାଇଛନ୍ତି, ଦ'ଧାଆ ବାଟ ଗେଲବସର ପାଟଣାର ପିତେଇ ସୁବୁଧି ଦୋକାନକୁ । ଏ ପର୍ଯ୍ୟନ୍ତ ଫେରିବାକୁ ନାହାନ୍ତି । କୁଆଡ଼େ ଥିଲି ଗଙ୍ଗଚିଲଟା, ଚୂଳ ଉପରେ ଆସି ଘେର ଖାଇଲା । ଚିଲଟା 'ଇଁ ଇଁ ଅଂ ଅଂ' ବୋଲି ଶବ୍ଦଟାଏ ମାରିଛି କି ନାହିଁ, ତେଣେ ଘର ଭିତରେ ଶୁଣାଗଲା "କୁଅାଁ—ଅ—ଅ, କୁଅାଁ—ଅ—ଆ, କୁଅାଁ ।" ଧରସରିଆ ମା ଦଉଡ଼ ଯାଇ କହି ଉଠିଲେ, "ବୋହୂ, ଆମର ସୁଲକ୍ଷଣା, ଗୁଣ ଜାଣିକରି ପରା ବାପ ମା ନାଁ ଦେଇଥିଲେ । ଲକ୍ଷେ ଶିବ ପୂଜା ଥିଲା ସେ, ତାର ତ ପୁଅ ହେବ ନାହିଁ, ଆଉ ହେବ କାହାର ? ହରି ନାହାକ ପାଞ୍ଚକୋଶ ଅନ୍ତରରେ ହାକ-ହାକ, ତାଙ୍କ କଥା ତେବେ ହେଲେ ପ ଣିରେ ପଡ଼ ନାହିଁ ।"

ରମ୍ଭି ଅପା ତ ଗାଁ ଯାକର ଅପା । ସେ ଜାତିରେ ଗୁଡ଼ିଆ । ତା'ର ଗୁରସ୍ତ ମଲି ଦାନ୍ତ ମୁଢ଼ି, ଉଖୁଡ଼ା, ଚୂଡ଼ାପୁଆ ଆଦି ତିଆରି କରି କେବଳ ଗାଁରେ ବିକେ । ତାର ହୁକାସି ବୋଲି ଗୋଟିଏ ପୁଅ । ବାପ ଛେଉଣ୍ଡ ପିଲାଟିକୁ ଗାଁ ଯାକ ଆଦର କରିଥାନ୍ତି । ରମ୍ଭି ଗୋଟିଏ ପରୋପକାରୀ ଗୁଣ ହାସଲ କରିଛି । ଗାଁରେ ଏପରି ବୋହୂ ଝିଅ ନାହାନ୍ତି ଯେ କି ରମ୍ଭିକୁ ଭଲ ନ ପାଏ । କିଏ ମାସଗଡ଼ା ହୋଇଛି, କାହାର ପାଞ୍ଚମାସ ଗଡ଼ ଚାଲିଣି, କିଏ ପୁଣି ଦଶମାସ ମୁଣ୍ଡାମୁଣ୍ଡି ହୋଇ ଗଲାଣି,—ସମସ୍ତେ ରମ୍ଭିର ହାତ ଓଠ ଧରି ଆଗରୁ ଜଗେଇ ଦେଇଥାନ୍ତି, ଯିମିତି ପୋଖତା କେଳେ ସେ ସାଙ୍ଗଛଡ଼ା ନ ହୁଏ । ରମ୍ଭି ମଧ ଶତ୍ରୁ ମିତ୍ର ବାଛ ବିଚାର ନ ରଖି, କିଏ ତାକୁ କହୁ ନ କହୁ ରଙ୍ଗ ରହସ୍ୟ କରି କଥା ହେଉ ହେଉ ମୂଳ ଉଦ୍ଦେଶ୍ୟଟା ବୁଝି ନେଇଥାଏ । ତା ଲେଖାରେ ସମସ୍ତେ ତାର ଆପଣାର । ତେଣୁ ବୋହୂ ଭୁଆସୁଣୀ ତାକୁ ଅପା ବୋଲି ସମ୍ବୋଧନ କରିଥାନ୍ତି । ଏହାପରି ତକ୍‌ତକ୍ ହେଉ ହେଉ ଟୋକା ଠାରୁ ବୁଢ଼ା ପର୍ଯ୍ୟନ୍ତ, ସମସ୍ତେ "ରମ୍ଭି ଅପା, ରମ୍ଭି ଅପା" ବୋଲି ଡାକ ଛାଡ଼ିଥାନ୍ତି ।

ଏବେ ବୁଢ଼ାଏ ଦେହରେ ଯେତେବେଳେ ଘୁଣ ଅଛି, ମନ ମଣି ଚଳିବାରୁ ମାଇପି ମହଲରେ ତା'ର ତ ବିଶେଷ ଆଦର ହେବାର କଥା । କିନ୍ତୁ, ପୁରୁଷବୁଢ଼ାଙ୍କ ତ ଭ୍ରମର ଜାତି । ସେମାନଙ୍କ ମଧ୍ୟରୁ କେହି କେହି ତାଙ୍କୁ ପଦେ ଅଧେ ଥଟ୍ଟା କରନ୍ତି କାହିଁକି ? ପାଠକମାନେ, ବୋଧହୁଏ, ଏହାକୁ ମନଧ୍ୟାନ ଦେଇ ପାଠ କଲାବେଳେ ଭାବୁଛନ୍ତି, ସେମାନେ ଆଉ କଳିକାଳ ସଂସାରରେ ନାହାନ୍ତି ! ଆପଣମାନଙ୍କ ଗାଁରେ କଣ ଛତରା, ବଗୁଲିଆ, ଭେଣ୍ଡା ଟୋକା ନାହାନ୍ତି—ନା, ସେମାନଙ୍କର ଆଜକାଲିକା ଗତି ନୀତି ଦେଖି ନାହାନ୍ତି ? ବ୍ୟବସାୟ ତ କିଛି ନାହିଁ, କାହା ପିଣ୍ଡାରେ ବସିବା ଜାଗାଘର, ଅଖଡ଼ା ଘରେ ବସି, ହୁଁ ହୁଁ, ଫିଁ ଫିଁ ହେବାଠାରୁ ଆରମ୍ଭ କରି ତାସ ଖେଳ, ପଶା ଖେଳ ବା ପ୍ରାଚୀନ ଛାନ୍ଦ ଚଉପଦୀରୁ ପଦେ ଅଧେ କୌଣସି ଯୁବତୀ ସ୍ତ୍ରୀ ବା ଝିଅଙ୍କୁ ଲକ୍ଷ୍ୟ କରି ଅଉଡ଼େଇ ଦିଅନ୍ତି,—ଏହା ହେଲା, ସେମାନଙ୍କର ଉପଯୁକ୍ତ ଶିକ୍ଷାର ଅଭାବ ଓ ବୟସ ମୁକୁମୂକୁ ହେବାର ଫଳ । ଚମ୍ପିର ସିନା କରମ ଫାଟିଲା, ଗୁରେସ୍ତ ମରିଗଲା, ସେ ବିଧବା ହେଲା; ଲଖ ବୋଲି କ'ଣ ତାର ବୟସ ବିତି ଯାଇଛି ? ଗୋଟାଏ ସିନା ଜନମ କଟି ଦେଇଛି, ନଇଲେ ଯେ କହିବ ତାକୁ ବୟସ କୋଡ଼ିଏରୁ ପଚିଶ ମଧ୍ୟରେ ।

ସେ ଚହଟ ଚମ୍ପା ଗେଣ୍ଡା ନ ହେଲେ କଣ ହେବ, ତାକୁ ନିସ୍ତୁସ୍ଥ ଗେଣ୍ଡା କହିବାକୁ ହେବ । ଯୌବନର ପୂର୍ଣ୍ଣ ମାତ୍ରା ଫୁଟି ବାହାରୁଛି । ସିମିତ ସଂଯମୀ ଲୋକ ନ ହେଲେ, ତାକୁ ଟିକିଏ ଦୃଷ୍ଟି ନ ପକାଇ ରହି ପାରିବ ନାହିଁ ।

ଚମ୍ପି ଅପା କୁଆ କୁଆଁ ଶବ୍ଦ ଶୁଣି ଭଗ୍ନ ଖୁସିଟାଏ ହୋଇ ଯାଇ ପୁଅଟିର ସାଷ୍ଟମ କରିବାରେ ଲାଗିଗଲା ଓ ଗରମ ପାଣି, ଧୋବକନ ଓ ହଳଦୀ ଯୋଗାଇ ଦେବା ପାଇଁ ଲୁଟିଆ ମା'କୁ ଫମାସୀ-ଟାଏ ପକାଇ ଦେଲା । ଲୁଟିଆ ମା' କହି ଉଠିଲା, "ବୁଆଟା ଦେହରେ

ନାଳ ଶୁଖିଯିବ, ବଡ଼ା ହେବ ଯେ, କମିଶ ଫୁଲ ପକାଇ ଦେଇ ପିଲାକୁ ଇଚ୍ଛସ୍ୱ ଇଚ୍ଛର ଦର ଦେବା ନା।"

ଚମ୍ପି ଅପା ଉତ୍ତର ଦେଲା, 'ହଁ ସାଆନ୍ତଙ୍କୁ କହଦଅ, ଲୁଲଟାଏ ଗୁଲ ଭଆଇଁ ଦେବେ । ଏହକଷଣି ଫୁଲ ପଡିଯିବ ।"

ଅସ୍ପ ଚକତ୍ସାଳୟର ସିଭିଲ ସର୍ଜନଙ୍କ ନର୍ଦ୍ଦେଶରେ ଅଧସ୍ତନ ଡ଼ାକ୍ତର, କମ୍ପାଉଣ୍ଡର, ନର୍ସ ଆଦ ହୁକୁମ ତାମିଲ କଲପର ସମସ୍ତେ ଚମ୍ପି ଅପାର ଉପସ୍ଥିତ କାର୍ଯ୍ୟ ନର୍ଦ୍ଦେଶ, ଯେ ଯାହାର ଭୁଲାଇବାକୁ ଲାଗିଲେ । ପିଲାର ନାହି କଟା, ଇଚ୍ଛସ୍ୱ ଇଚ୍ଛର ଓ ଯୁଆଡ଼ି ସଫାସୁତୁସ୍ୱ ହୋଇଯିବା ପରେ କୋଚଲା ହାଠରେ ଇନ୍ଧନ ଲାଗିଲା । ପିଲାକୁ ଓ ମା'କୁ ସେହା ବୁଜା କସ୍ୱଗଲା । ଗହଳ ମାହାଳ ଭାଙ୍ଗି ଯେ ଯାହାର ଘରକୁ ଗଲେ ।

ମା' କୋଳକୁ ସୂର୍ଯ୍ୟ ଯାଉଛନ୍ତି । ଭକସ୍ୱମ ମିଶ୍ରେ ପିଣ୍ଡା ଉପରେ ବସିଥିଲେ । ବୁଢ଼ଅ ବୋଝେ ବୁଦ୍ଧଅ ଲଡ଼୍ ଅଣି ଥୋଇ ଦେଲା । ମିଶ୍ର ଡାକ ପକାଇବାରୁ ପିଲାମାନେ ଆସି ଗଦା ହୋଇଗଲେ । ମିଶ୍ରଙ୍କୁ ଭଲ ଦୃଶ୍ୟ ହେଉନାହିଁ । କେହୁଟା ଗୁଡ଼ିଏ ପିଲା ତାହାଣ ହାତରେ ଗୋଟାଏ ମିଠାଇ ନେଇ ପୁଣି ବାଁ ହାତ ବଢ଼େଇ ଦେଇ ଅଉ ଗୋଟାଏ ମିଠାଇ ନେଇ ଗଲେଣି । ମିଶ୍ରେ ତ ହୁା ଜାଣିପାରୁ ନାହାନ୍ତି । ଏହି ସମୟରେ ବାଁ ପଟେ ବସିଥିବା ନାତ୍ତିକ ତାଳପତ୍ର ଲେଖା ଖଣ୍ଡିଏ ଦେଖାଇ କହିଲା, "ସାଆନ୍ତେ ଆଜ୍ଞେ ! ପିଲା ଭୂଇଁରେ ପଡିଲା ବେଳକୁ ବାର, ବେଳା, ଲଗ୍ନ ଠିକ ଚୁମ୍ବି ଯାଇଛି, ପଠାଣି ସାଆନ୍ତଙ୍କ ପାଞ୍ଜି, ସେଥିରେ କ'ଣ ଧୂଳି ମଳି ଥାଏ ? ପାଞ୍ଜି ମିଳାଇ ଦେଖିଲି ପିଲା କୋଷ୍ଠୀରେ ଗ୍ରହଚକରେ ଗ୍ରହମାନଙ୍କର ଯେପରି ଅବସ୍ଥିତି ଅଛି, କର୍କଟ ଲଗ୍ନରେ ଚନ୍ଦ୍ର ଓ ବୃହସ୍ପତି, ପଞ୍ଚମରେ ମଙ୍ଗଳ, ରବି, ଶୁକ୍ର, ବୁଧ ଥିବାରୁ ଏ କୋଷ୍ଠୀ, ଏହାକହ ଅବଧାନେ ଗୋଟିଏ ଶ୍ଲୋକ ଅଉଡ଼େଇ ଦେଲେ—

ଯତ୍ର କୃତ୍ତ୍ୱାଭଥୈନ୍ଦ୍ରସ୍ତ ଲଗ୍ନ ଚନ୍ଦ୍ରାର୍ ମେ ଭବ
ପୁତ୍ରୁଷୋ ରାଜ ଯୋଗ୍ୟଂ ସ୍ତ୍ରୀ ସ୍ୟାତ୍ କୁଳଟା ଭବେତ୍ ।

ରାଜଯୋଗୀ, ପିଲାଟି ଜଣେ ରାଜ୍ୟପାଳ ହେବ । ମିଶ୍ରେ କହିଲେ, "ହଁ, ରାମ ରାମ, ପାଣି ହାଣ୍ଡିର ପିଲା, କପାଳରେ ପଣିବ ନା ମହୁ ମହୁ ବାଜିବ ! ଭଗବାନ ତାକୁ ଆୟୁଷ ଦେଇଥାନ୍ତୁ ।"

ତୃତୀୟଦିନରେ ଉଠିଆରି ହେଲା । ପାହାନ୍ତାରୁ ଶାଶୁବୋହୂ ଉଠି ଅନ୍ତୁଡ଼ି ଶାଳରୁ ସବୁ ସାଉଁଠା ସାଉଁଟି କରି ନେଇ ଗାଁ ମୁଣ୍ଡେ ପଣଆତଆ କରି ରଖିଦେଇ ଆସିଲେ । ବେଙ୍ଗୁନିଆ, ବାସଙ୍ଗ, ନିମ୍ବ ଆଦି ପତ୍ରପକା ସିଝି ପିଲାକୁ ଗାଧୋଇ ଦିଆଗଲା—ସେହି ଦିନଠାରୁ ପିଲାକୁ ଧରିବାର ଅଧିକାର ସମସ୍ତଙ୍କର ଆସିଗଲା ।

ଦେଖୁ ଦେଖୁ ପାଞ୍ଚଦିନ ହେବାକୁ ବସିଲା । ପାଞ୍ଚଦିନରେ ପଞ୍ଚୁଆତି ହେଲା; କରୁ, ଚାଉଳ ମୁଗ, ଯୋଲଖଡ଼ି, ଖଣ୍ଡନଡ଼ିଆ, ସାମାନ୍ୟ ଗୁଡ଼ ଓ ଘିଅ ଗୋଳାଇ ଭୋଗ ଲାଗିଲା, ମାମୁଁମାନଙ୍କୁ ଅଗ ଦିଆଗଲା । ତା ପରେ ସଇ ପଡ଼ିଶାରେ ବଣ୍ଟାଗଲା । ଛଅଦିନରେ ଷଠିଘର ହେଲା, ଅର୍ଥାତ୍ ଶୋଇବାଘର କାନ୍ଥରେ ମାଟିରେ ତିଆରି କରି ବୁଢ଼ୀଦୋଣିଆ କୋଠ ଛଅଟି କରି ସେଥିରେ ଓ ସେହି କୋଠିକୁ ଅଲଗା କରି ରହିଥିବା ଶିଳ ଉପରେ ହଳଦୀ, କୁଙ୍କୁମ, ମଥାଘଷା ବଟାରେ ଛଅଟି ମୂର୍ତ୍ତିରେ ଏକୋଇଶ କଡ଼ା କଉଡ଼ି ଖଞ୍ଜା ହେଲା, ଶିଳପ ଖରେ ଶିଳପୁଅ ଠେସା-ହୋଇ ସମସ୍ତଙ୍କୁ ହଳଦିଆ ଲୁଗା ପିନ୍ଧାଇ ଦେଇ ସିନ୍ଦୁର ଲଗା କରାଗଲା । ଅପମାରଗ, ଲଜ୍ଜାମୂଳୀ ଗଛକୁ ନେଇ ଶିଳର ଉଭୟ ପଟେ ଥୁଆ ହୋଇଛି । ସାତପ୍ରକାର ପିଠାପଣା କରି ଶିଳ ଆଗରେ କଟା ହୋଇଥିବା ପଦ୍ମ—ଟିଙ୍କା ଉପରେ ରଖି, ଭୋଗ ଦିଆଗଲା ଷଠିବୁଢ଼ୀଙ୍କି । ଖଣ୍ଡେ ନୂଆ ତାଳପତ୍ର ହଳଦୀ ବୋଳାହୋଇ କୋଠିଘର ତଳେ ଷଠିବୁଢ଼ୀଙ୍କ ଉଦ୍ଦେଶ୍ୟରେ ଧୂପ, ଦୀପ ଓ ନୈବେଦ୍ୟ ସହ ଥୁଆହୋଇ ଥିଲା. ଯେଉଁଠି ରାତି ଭିତରେ ଷଠିବୁଢ଼ୀ ତଳକୁ ଆସି ବନ୍ଦହୋଇ ରହିଥିବା ଘରଭିତରୁ ଭୋଗ ଖାଇ, ସନ୍ତୁଷ୍ଟ ହୋଇ, ଲେଖିଦେଇ

ଯିବେ, ସେହି ତାଳପତ୍ରରେ ପିଲାର ଭାଗ୍ୟ, ଅଉ ସେହି ତାଳପତ୍ର ନେଇ ଗଚ୍ଛାବୁଝି ତିଆରି କରି ଅଣିବେ ତାକୁ ।

ବାଉଯାତ୍ରା ଦିନ ପିଲା ମୁଣ୍ଡରେ ପୁଣି ପାଣି ପଡ଼ିଲା । ଲୁଚ, ତିଅଣ ଖିରିପିଠା କରି କୁଟୁମ୍ବ ବାନ୍ଧୁମ୍ବ ଖାଇଲେ । କିନ୍ତୁ ଅଜିଠୁ ଏକୋଇଶିଆ ପାଇଁ ଖୁବ୍ ଆୟୋଜନରେ ରାମରାମ ମିଶ୍ରେ ଲାଗିପଡ଼ିଛନ୍ତି । ସତ୍ୟ-ନାରାୟଣ ପାଲା ହେବ, ପୁଣି ଦଣ୍ଡ ପାଲା, ଅଉ ତାହାର ନା,—ଗାଁ । ମହାଜନ ଘରର । ତାହା ତିଂଶ ଟଙ୍କାଏ ନାଖେରେ ହେବ । କଦଳୀ ବଗିଚାରୁ ଏକୋଇଶ ଖାନ୍ଦି ପାଠଭୋଗର କଦଳୀ ଅସି ପସୁ ହେଲଣି । ଗୁଡ଼ିଆ ମଧ ଖଇ, ଭୋଗ, ମିଠାଇ ପାଇଁ ବରାଦ ନେଇ ଯାଇଛି । ଅଉ ଚୁଡ଼ାଘସା ହେବାପାଇଁ ଢେଙ୍କିମାନଙ୍କୁ ଗୁରୁଭରଣ ଧାନ ଚୁଡ଼ାକୁ ଦିଆଗଲା । ଅଖି ଖଦାବ୍ଲକ ଗୁଡ଼ ଅସି ବର୍ଷକୁ ଘରେ ରହି ବନ୍ଦୀ ହେଉଛି, ନଡ଼ିଆ ବ ଘରେ ଝୁଡ଼ା ଶୁଖିଲା କେତେ ଖତ ଖାଉଛି । ଅଉ ପରା ନଡ଼ିଆ କଥା ପଚାରେ କିଏ ? ଷୋଳ ଶାସନରୁ ବଛାହୋଇ ବ୍ରାହ୍ମଣମାନଙ୍କୁ ଅମନ୍ତ୍ରଣ ହେବ, ଗାଁ ଲୋକ ତ ସହଜେ ।

ରାମଚନ୍ଦ୍ରପୁର ଶାସନର ଚୁଡ଼ାଘସା ନାଁ ଡାକ । ଜଗନ୍ନାଥ ଦେଉଳର ଚଢ଼େଇ ଲେଦାପରି ଘିଅ ପୁରୁ ପୁରୁ । ଯେ ସେ ଚୁଡ଼ାଘସା ଖାଇଛି, ଅଉ ମହାଜନଭୋଗକୁ କିଅଁ ମନ ବଳେଇବ ? ଚୁଡ଼ାଘସା ସାଙ୍ଗକୁ ଗହମଖିରି, ସୁଜିଖିରି ଓ ପାଲାପାଇଁ ଶିରଣିରେ ପ୍ରାୟ ମୋଟ ପାଞ୍ଚମହଣ ପନ୍ଦରସେର ଖିର ଲାଗିଯିବ । ଗୋଠିଆ ଗଉଡ଼ ସବୁ ନାକୁତା ଖିରପାଇଁ ବରାଦ ନେଇ ଗଲେଣି । କଶୁ ମହାନ୍ତି ସଦର ଗୁମାସ୍ତା ଦୁଇପଞ୍ଝା ପାଲାବଲା ବାଦୀ କରିବା ପାଇଁ ନିଜେ ଯାଇ ବିନ୍ଧଣା ଦେଇ ଅସିଲେ । ହେତାଖିଆ ଧୋବା, ବାଉରି ସବୁ ଆସି କାଠଚ୍ଛ ଓ ଛାମୁଣ୍ଡିଆ କାମରେ ଲାଗିଛନ୍ତି । ଉକ୍ତରାମ ଦଣ୍ଡଘରେ ନିଜେ ଜଗିବସି କଣିଆ ଦ୍ୱାରା ସୁନା ବାଛ ଓ ସୁନା ଖଡ଼ୁ ତିଆରି କରାଉଛନ୍ତି । ଏତିକି-ବେଳେ ବୁଢ଼ା କଶୁ ମହାନ୍ତି ଅସି କହିଲେ, "ସାଆନ୍ତ ଅପଣେ ! ବରହମପୁରୀ ପାଟଯୋଡ଼, ପାଟଶାଢ଼ୀ କେବଳ ବାବୁ ସାମନ୍ତ ଓ

ସାମନ୍ତାଣୀଙ୍କ ପାଇଁ ଆସିବ କି ? ପୁଅ ପାଇଁତ ତାର ମାମୁଁଘରୁ ଆସିବ ।”
ବୁଢ଼ା ସାଆନ୍ତ ଉତ୍ତର ଦେଲେ, ନା, ନା, ଖଣ୍ଡେବୋଲି ନାହିଁ, ମାମୁଘରୁ ଆସୁ ବଣ ହେଲୁ, ତା ପାଇଁ ନ ହେଲେ, ମୁକ୍ତସାବାଳ ଯୋଡ଼ ନେଇ-ଆସ ।”

ଠିକଣା ମୁଣ୍ଡକୁ ସବୁ ଠିକ୍ ଠାକ୍ ହୋଇଯାଇଛି । ଭୁବ ନାହାକ ମଙ୍ଗଳାଷ୍ଟକ ବୋଲିଲେ—

“ମଙ୍ଗଳଂ ଭଗବାନ ବିଷ୍ଣୁ, ମଙ୍ଗଳଂ ମଧୁସୂଦନ,
ମଙ୍ଗଳଂ ପୁଣ୍ଡରୀକାକ୍ଷଂ ମଙ୍ଗଳଂ ଗରୁଡ଼ ଧ୍ୱଜଃ
ମାଧବୋ ମାଧବୋ ବାଚ୍ୟଂ ମାଧବୋ ମାଧବୋ ହରିଃ
ସ୍ମରନ୍ତି ସାଧବା ନିତ୍ୟଂ ସକଳ କାର୍ଯ୍ୟେଷୁ ମାଧବଂ ।”

ସୁଲକ୍ଷଣା ଦେବୀ ପୁଅକୁ କୋଳରେ ଧରି ବସିଲେ । ତାଙ୍କ ଡାହାଣକୁ ରାମସ୍ୱାମ ମିଶ୍ର ବସିଲେ । ପୁରୋହିତ ଦୁବ ଅରୁଆଚାଉଳ କାଠ, ମା’ ଓ ପୁଅର ମୁଣ୍ଡରେ ଧୀରେ ଧୀରେ ପକାଇ ଆଶୀର୍ବାଦ କଲେ—

“ବେଦୋକ୍ତ ମନ୍ତ୍ରାର୍ଥାଃ ସିଦ୍ଧସ୍ତୁଃ ସ୍ୟନ୍ତୁ ଶତ୍ରୁଣାଂ ବୃଦ୍ଧି ନସନ୍ତୁ ପୂର୍ଣ୍ଣାଃ ସ୍ୟନ୍ତୁ ମନୋରଥାଃ ମିତ୍ରାଣାଃ ମୃତ୍ୟୁସ୍ତବ ଅବ୍ୟାଧିନା ଶରୀରଣାଂ ଇତ୍ୟାଦି, ଇତ୍ୟାଦି, ରାହାସ୍ୱର୍ଗୀ କରିଥିବା ଜାତକରେ ପୁଅର ନାମ ‘ମ’, ଅକ୍ଷରରେ ଆରମ୍ଭ ହେବାର ଲେଖାଥିଲି । ତେଣୁ ଉଭୟ ମାତା ପିତାଙ୍କ ଇଚ୍ଛାନୁସାରେ ପୁତ୍ରର ନାମ ଦିଆଗଲା ମୋହିନୀ-ମୋହନ, ପୁରୋହିତ ଓ ଜ୍ୟୋତିଷ ଭୁରି ଭୋଜନ କରି ଦକ୍ଷିଣା, ସିଧା ଓ ଲୁଗାପଟା ନେଇ ମନ ଖୁସିରେ ସ୍ୱ ସ୍ୱ ଗୃହକୁ ଫେରିଲେ ।

ଘର ସାମନା ବାଡ଼ି ଛମୁଣ୍ଡିଆ ତଳେ ଗଡ଼ା ହୋଇଛି ଗୋଟିଏ ବେଦୀ । ବେଦୀ ଚାରିକୋଣେ ଚାରିଗୋଟି ଛୋଟ ଛୋଟ କଦଳୀ ଗଛ ପୋତା ହୋଇଛି । ନାନା ରଙ୍ଗର ଫୁଲମାଳ କଦଳୀ ଗଛଗୁଡିକର

ମଣ୍ଡପ ସ୍ୱରୂପରେ ଧନୁପରି ଝୁଲୁଛି । ବେଦୀ ଉପରେ ନୂଆ ଲୁଗା ପଡ଼ି ଅଛି, ତା ଉପରେ ମୂର୍ତ୍ତିମାନ ବଢ଼ାଗଲା । ଧୂପ, ଦୀପ, ନୈବେଦ୍ୟ, ଶିରଣି ଆଦି ବିଧିବିଧାନ ମୂତାବକ ଖଞ୍ଜା, କିଛି ଆଉ ଖୋଜିବାକୁ ନାହିଁ । ପୁରୋହିତ ପୂଜାଧଜାରେ ଲଗି ଯାଇଛନ୍ତି । ଆମନ୍ତ୍ରିତ ଭଦ୍ରଲୋକମାନେ ଛମୁଣ୍ଡିଆ ଭିତର ଗାଲିଚା ଓ ଦରି ଉପରେ ବସିଥାନ୍ତି । ପାଲବାଲା ପଞ୍ଝାଏ ଆସି ସତ୍ୟପୀରଙ୍କ ଆଗରେ ଠିଆ । ପୂଜାଧଜା ସରିବାକୁ ବାୟକ ମୃଦଙ୍ଗ ବଜାଇ କେତେ ନା କେତେ ଉକୁଟ କରି ତାଳ ଦେଇଁ କଲା । ପାଳିଆମାନେ ଝାଞ୍ଜରେ ତାଳ ଦେଇ ଓ ବାୟକ ସଙ୍ଗେ ଉଦଣ୍ଡ ନୃତ୍ୟରେ ମାତି ଯାଇ ଦର୍ଶକମାନଙ୍କ କୌତୂହଳ ଉପୁଜାଉ-ଛନ୍ତି । ଶେଷରେ ଗାୟକରନ୍ଦ୍ର ବିଶ୍ୱନାଥ ଚମର ମୁଠା ବାଁ କାନ୍ଧରେ ପକାଇ ଓ ହାତରେ ଧରି, ଡାହାଣ ହାତରେ ଗିନି ବଜାଇବାକୁ ଲାଗିଲେ । ସତ୍ୟନାରାୟଣଙ୍କ ସମ୍ମୁଖରେ ଗଣପତିଙ୍କର ବନ୍ଦନା ବୋଲି ସରିବା ପରେ ଶ୍ଳୋକ, ଗୀତ, ଚଉପଦୀ, ଛାନ୍ଦ, ଜଣାଣ ଆଦି ଶାସ୍ତ୍ର, ପୁରାଣ, କାବ୍ୟ ଓ ନାଟକମାନଙ୍କରୁ ଚର୍ଚ୍ଚା କରାଗଲା । ମଝିରେ ମଝିରେ ବାୟକ ବାହାଦୁରି ଦେଖାଇ ନିଜର ସାବଲ ପରି ବୋଲା ହାତ ଦ'ଟାରେ କୁଡ଼ାଇ ପକାଉଥାଏ ବାଜା ଓ ପାଟିରେ ଉକୁଟ କରୁଥାଏ, "ତେଁ ତରକିଟ ଥେଇ ଅ—ଅ—ଅ, ଧିନା ଧିନା, ନାଧି ଧିନା, ନାଧି ଧିନା ଥେଇଆ ତା ।"

ଯାହାହେଉ, ଗାୟକରନ୍ଦ୍ରଙ୍କର କଣ୍ଠର ସ୍ୱର ଓ ଭାଭିନ୍ନ ଭଙ୍ଗୀରେ ପୁରାତନ ଓ ନୂତନ କାବ୍ୟ, କବିତା ଓ ଶ୍ଳୋକଗୁଡ଼ିକର ଭାଭିନ୍ନ ଅର୍ଥ କରିବାର ପ୍ରଣାଳୀ ଦର୍ଶକମାନଙ୍କୁ ବେଶ୍ ମୁଗ୍ଧ କରି ପାରିଥିଲା । ପଣ୍ଡିତ ମଣ୍ଡଳୀ ମଧ୍ୟରୁ ସାମୟିକ କେହି କେହି ପ୍ରଶ୍ନ କଲେ ଗାୟକ ତାହା ଦକ୍ଷତା ସହ ସମାଧାନ କରି ଦେଉଥାନ୍ତି । ମନରୁ ତୁରନ୍ତ କବିତା ରଚନା କରି ଅନ୍ୟ ପାଲି ବାଲାଙ୍କ ପାଇଁ ଗୋଟିଏ ପ୍ରଶ୍ନ ଗଣ୍ଠି ରଖିଦେଇ ଗାୟକ ତାଙ୍କର ଅଭିନୟ ଶେଷ କଲେ । ପ୍ରଶ୍ନ ହେଲା, "ରାଧା ବୃଷଭାନୁ ଘରେ ଜନ୍ମହୋଇ ତିନଦିନ ଚକ୍ଷୁ ନମିଳାଇ

ରଖିଥିଲେ । ନନ୍ଦ ପୁରରେ କୃଷ୍ଣ ଜନ୍ମହେବା ଶୁଣି ଜନନୀ ସୁଧାଙ୍କୁ କୋଳରେ ଧରି କୃଷ୍ଣ ଦର୍ଶନ ଆଶାରେ ଯଶୋଦା ମନ୍ଦିରରେ ପ୍ରବେଶ କଲେ । ସେହିଠାରେ କୃଷ୍ଣହିଁ ସୁଧାଙ୍କର ପ୍ରଥମ ଦର୍ଶନୀୟ ବ୍ୟକ୍ତି ।’ ଏହି ତତ୍ତ୍ୱକୁ ଅନ୍ୟ ଗାୟକ ମନଃରେ ତନ୍ମୟ କରିବେ ଓ ସଂସ୍କୃତ କାବ୍ୟ ଶାସ୍ତ୍ର ସଙ୍ଗେ ଆଧୁନିକ ଓ ପ୍ରାଚୀନ ଛନ୍ଦ ଚଉପଦୀର ସମନ୍ୱୟ କରି ଶ୍ରୋତୃବର୍ଗଙ୍କର ମନ ମୁଗ୍‌ଧ କରିବେ ।

ବଙ୍ଗ-ସାହିତ୍ୟକୁ ଉତ୍କଳୀୟ ସାହିତ୍ୟର ଦାନ ଆଧୁନିକ ସାହିତ୍ୟ-ବିଶାରଦମାନଙ୍କ ବିଚାର ବୁଦ୍ଧିରେ ଗଭୀର ମୁଦ୍ରାଙ୍କନ କଲପରି ପ୍ରତୀୟ-ମାନ ହୋଇ ନ ଥିଲେହେଁ, ବଙ୍ଗ ସାହିତ୍ୟିକମାନେ ସେମାନଙ୍କର ବିଶ୍ଳେଷଣାତ୍ମକ ତୀକ୍ଷ୍ଣ ବୁଦ୍ଧି ପ୍ରୟୋଗ କରି ନାସିକେଳୋପମ ଏହି ସାର୍ବଜନୀନ ସାହିତ୍ୟ ରସାସ୍ୱାଦନ କରିବାକୁ ଅସମର୍ଥ ବୋଲି ପ୍ରତୀୟ-ମାନ ହୁଏ । ଉତ୍କଳ ସାହିତ୍ୟକୁ ସାର୍ବଜନୀନ ବୋଲି କହିବାର ଯଥାର୍ଥ୍ୟ ପାଇଁ ସାହିତ୍ୟ ଓ ସାଧର ନିରକ୍ଷର ନିର୍ବିଶେଷରେ ତାର ସର୍ବପ୍ରିୟତା ପ୍ରତି ଲକ୍ଷ୍ୟ କଲେ ବେଶ୍ ପ୍ରତିପନ୍ନ ହୁଏ । କିଏ କହିବ ଯେ, ତାର ସମକକ୍ଷ ସାହିତ୍ୟ ଅନ୍ୟତ୍ର ଦୃଷ୍ଟି ଗୋଚର ହୁଏ ?

× × × ×

ଗାଧୁଆବେଳ । ସୁମସୁମ ମିଶ୍ରେ ଏବଂ ମଧୁ ମହାପାତ୍ରେ ବେଣ୍ଟ ପୋଖରୀରେ ଗାଧୋଉଛନ୍ତି । ଅଖୁସି ପରିଡ଼ା ଲଙ୍ଗଳ ଫିଟାଇ ତାର ବଳଦ ହଳକ ଗାଧୋଇ ଦେବାକୁ ପାଳ କେରିଏ ଓ ପାଞ୍ଚଣଟା ଧରି ଆସିଲା । ଗୋଟାଏ ବଳଦ ପାଣି କୂଳକୁ ଆସିଲା, କିନ୍ତୁ କପିଲା ବଳଦଟା ଖରା କରିବାକୁ ବନ୍ଧତଳକୁ ଗଡ଼ିଯାଇ ମୁଗ ବିଲରେ ଚରିଲା । ଅଖୁସି ତା ପଛରେ ଗୋଡ଼ାଇଯାଇ ଡାକ ପକାଇଥାଏ । “ଅତ୍ତଃ, ଅତ୍ତଃ, ଗୋସେଇଁ ଖିଅଟା ପର ଖରା ନ କଲେ ଆଉ ପେଟ ପୁରୁ ନାହିଁ । ଚାଲ, ଚାଲ, ଭଲକରି ଚଉସମ ଦଉଛି ।” ତା ପାଖରେ ପହଞ୍ଚିଯାଇ ତା ମଝିପିଠିକି ସେ ବ’ଡ଼ାଏ କଷିଲା । ସେଇ ଚରକରେ ସେ ବଳଦଟା ଅସି ପାଣିରେ ପଶିଲା । ଅଖୁସି ବଳଦ ବ’ଟାଙ୍କ

ଉପରେ ଅନ୍ଧାରରେ ପାଣି ପଡ଼ାଇ ପାନ ବଣ୍ଟାଏ ଧରି ଘଷିବାରେ ଲାଗିଛି । ମହାପାତ୍ରେ ଗଳା ଖଙ୍କାରି କହିଲେ, "କିରେ ପଣ୍ଡାଘର ପୁଅ ! ବାଣକ ଘର କେଉଁଠି ବୃଷ ବୁଲୁଛି କି ? ଆଉ କେଉଁ ଜମିରେ ପାଗ ଅଛି ?" ଅଖଣ୍ଡ ଉତ୍ତର ଦେଲା, "କ'ଣ ସାଆନ୍ତେ, ଏ କାଇଁଠା ବୃଷ କରିବା କଥା, ଠାଏ ପାଣି ଥିଲେ ଠାଏ ଠିକ୍ ଗଲାଣି । ମୁଁ ଯେବେ ଆମ ସାଆନ୍ତଙ୍କୁ ମନାକଲି, ସେ ଖାଲି କହିଲେ, ଏଁ ମହାଜନଙ୍କ ଘର ତ କାହିଁଏ ଜମି ବୃଷ ସରିଲାଣି । ଆମର କ'ମାନେ କେଲେ ବୃଷ କେବକାହିଁ ? ମୁଁ କହି ପକାଇଲି, ସାଆନ୍ତେ ! ତାଙ୍କର ତ ମହୁ'ର ଉପରେ କ୍ଷୀର ବରଷୁଛି, ବେଳକୁ ବେଳ ଉଚ୍ଛୁଳି ହେଉଛି । ତାଙ୍କର ପଞ୍ଚ ଝରକଡ଼ା ଜମି, ପୋଖରୀ ମୁହିଁ, ଆଉ କାଇତଳା । ଆପଣଙ୍କର ତ ଖୁବୁ ଠେଙ୍ଗ ଜମି । ମୁଁ ଏତିକି କହୁଛି କି, ନା କହୁଛି, ମୋ ଉପରେ ସେ ତୋ-ନାଇ ମୋ-ନାଇ ହୋଇ କହିଲେ, ହୁଁ ଘାଇକୁ ନାହିଁ କାହିଁକି ? ଦିନେ ଯାଇ ପତର ପକାଇଥିଲୁ ବୋଲି ତ ତୋର ସେ ଗୋଡ଼ାକଯାକ, ଆଉ ଯାହାର ନିମକ ଖାଉଛୁ ତାର'ଠି ବେଇମାନ ? ଏ ଭାଲପଣ୍ଟି କାବକୁ ହୋଇଛି ।"

ରାମରାମ ମିଶ୍ର କହି ଉଠିଲେ, ହଇଏ "ମହାପାତ୍ରେ ! ଆମେ ତାଙ୍କର କି ଅନିଷ୍ଟ କରିଛୁ ଯେ, ସେ ସବାବେଳେ ଆମ ବିପକ୍ଷରେ ଲୋକଙ୍କୁ ମତାଇ, ଚୋରାଚୋରାମାନଙ୍କୁ ଧରି ସଭା ସମିତି କରି ମହାଜନଙ୍କର ଖଜଣା ବନ୍ଦ କରିବା, ପ୍ରଜାଙ୍କର ବେଠି, ଭେଟି ଆଦି ବନ୍ଦ କରିବା, ହାତ ବାଉଁଶଙ୍କ ସାଥିରେ ଏକାଠି ବସାଉଠା କରିବା, କ'ଣ ତାଙ୍କର ଠିକ୍ ହେଉଛି ? କି କାଳ ହେଲା ! ସେଇଟି କାଳକୁ ବଡ଼ ବଢ଼ିଆ କରିଦେଲେ । ଆଉ ଦେହ କାହାକୁ ମାନିବେ ନାହିଁ । କଂଗ୍ରେସ ରାଜତ୍ୱ ଆସିଲା, ଦେଶଟାକୁ ସାରିଲା, ଜାତଗୋତ ଆଉ କିଛି ରହିଲା ନାହିଁ !"

ମହାପାତ୍ରେ କହିଲେ, "ଗବନ ସ୍ୱାଧୀନ୍ କହିଲ, ସେଆଡ଼େ ଛଡ଼ା କେଖାଇ ବୁଲିବା କରବାର । ଏଣିକି ଯାହା ହେଲାଣି, ନିଜ୍ କାମ

ନିଜେ ଲଢ଼ିବାକୁ ପ୍ରସ୍ତୁତ ନ ହେଲେ ଉପାସ ଶୋଇବାକୁ ପଡ଼ିବ । ବେଳକୁ ବାଣ୍ଟ ନ କାଟିଲେ ବୁଲ୍ମୀର ନେଇ ମର୍ଦ୍ଦନଈରେ କରିବ । ଶଙ୍କର ବାଣ ଏ ଗାଁ'ଟାକୁ ସାରିଦେଲା । ସେ ନିଜେ ହାଡ଼ହାଡ଼ ହେଲା । ପୁଣି ଖାଇପଡ଼ଶା ସମସ୍ତଙ୍କୁ ନେଇ ସେଇଥିରେ ପକାଇଲା । ତ'ଠି ସବୁ ତ ଜାଣୁଛ ! ଟୋକା, କେଣ୍ଡା, ବୁଢ଼ା, ବୁଢ଼ୀ, ଝିଅ, ଭୁଅସୁଣୀ ସମସ୍ତ ସେ ଯାହା ଦେଖିଲ, ସବୁଥିରେ ହିଁ, ସବୁରେ ସମସ୍ତ ଭୁଞ୍ଜ, ତାର ବଳୁଟା ବେଲ୍ବେଳେ ଚାଳି । ହିଁ ଅରଟରେ ସୂତା କାଟିବାକୁ ଦେଖିଲ, ଅଧାଅଧି ଦାମରେ ଅରଟ ମିଳିଲା, ନିଜ ନିଜର ସ୍ୱଳସ୍ୱଣ ମେଣ୍ଟାଇବାକୁ ଧୋତି ଖଣ୍ଡେ ବା ଗାମୁଛା ଖଣ୍ଡେ ହେଲେ ଭରିହେବା । କିନ୍ତୁ ତାହାକୁ ସୁବିଧୋଜ ହେଲେ ତାହାକୁ ଛାନଡୋଡ଼ି କର୍ଜ; ଭଏ ଧରି ଅଛେଲେ, ଭଏ ବାତଜରିଆ, ଏମାନଙ୍କର ଅଫିମ ଅଭ୍ୟାସ ଛଡ଼ାଇଲେ, ସେ ସବୁମରିବେ ନା ଗାଇବେ ? ସେ ନରହତ୍ୟା ଦୋଷ ଭଏ ମୁଣ୍ଡେଇବ ?—ସେଇ ତ ପୁଣି । ଓମ୍, ଇସ୍କୁଲିଆ ଟୋକାଗୁଡ଼ାକୁ ଅଲ୍ଟାସୁଖ ଦେଇ ପଢ଼ାଇଲ । ତୁଅଁ ଅଟୁଁ ତ ଅଇ ମାନିଲ ନାହିଁ । ନ୍ୟାୟ ନିଶାପରେ ତମର ଯାହା ଦ'ପଇସା ଲାଭ ହେଉଥିଲା, ସେଥିରେ ପାଞ୍ଚ ଟେଙ୍କ ମୋ ହାତଟା ବି ଚିକ୍କଣ ହେଉଥିଲା । ମୋ ଦାନା ମାଇଲୁ ପସ୍ । ଏପଟେ ସେ ପଟେ ପଞ୍ଚଣ ପସ୍ୱଣ ପୀଢ଼ ବସୁଥିଲା । ଯାହାର ଦୋଷ ହେଉଥିଲା, ତା ପୀଢ଼ି ପାଞ୍ଚସଗ ହୋଇ ଗ୍ରାମଦେବୀଙ୍କର ଭଣ୍ଡାର ପାଇଁ ସ୍ୱପେ, ଗାଁ ମହାଜନଙ୍କର ଦ'ସ୍ୱପେ, ଖୋଦ ମାମଲତଦାରଙ୍କର ସ୍ୱପେ, ପାଞ୍ଚସ୍ୱପେ ରହେ ଗାଁର ଭଲ ମନ୍ଦରେ ଖଡ଼'ପାଇଁ ଆପଣଙ୍କ ଜମା । ଏବେ ତ'ଣ ନା—ମୁଦେଇର ହାତ ଧରି ମୁଦାଲ୍ ଉଠେଇ ନେଲେ—ସବୁ ସାଫ ! ଅଲ୍ଟାଇଷ୍ଟେଅଟା ମୋ ତଣ୍ଟିରେ ବାଉଁଶ ମଡ଼ାଇ ଦେଲା ପସ୍ । ହିଁ; ଗାଁ ସଫା ଭଲ, ମୋଖସ୍ୱ ଦଳ ପରିଷ୍କାର ଭଲ, ପାଠାଗାର ଓ ପଠାଘର ଭଲ, କିତାବ ପଡ଼ନ୍ତୁ ପାଞ୍ଚକଥା ଶିଖିଲ, ପାଞ୍ଚକଥା ଜାଣିଲ ଏବଂ କୁସ୍ତି ଦେଖିଲ ଭଲ, ସେ ତ ଭଲ କଥା । ଯାଇ ଏ ହାତ, ବାଉସଙ୍କୁ ଅଣି ଅମ ସାଙ୍ଗରେ ବସାଇ, ତାଙ୍କ

ସାଙ୍ଗରେ—ତୁମେ ଟୋକାଗୁଡ଼ାକ ସବୁ ଚକୁଳି ଖାଇ ଆମର ବିଦ୍ୟା ନଷ୍ଟ କଲ ଯାହା !"

ରାମସ୍ୱାମ ମିଶ୍ରେ ସବୁ ଚୁପ୍ ହୋଇ ଶୁଣି ଯାଉଥିଲେ । ଝାଳାଣି କାହିଁକି—ଏଥର ସେ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହି ଉଠିଲେ, "ହଇଏ ମହାପାତ୍ରେ ! ତୁମେ ତ ମୋର ଭାହ୍ନାଣ ହୁଅ, ତୁମେ ନ ଜାଣି ମୁଁ ବା କେଉଁ କଥା କହେ ? ମୁଁ କହୁଥିଲି ତ ଆମର ଟୋଲ-ମାନରେ ଅଛ ଶ୍ଲୋକ, ସଂସ୍କୃତ, ଗୀତା, ଭଗବତ ପାରାୟଣ କରି ଓ ଅଳ୍ପ ବୈଷୟିକ ଜ୍ଞାନ ଲାଭ କଲେ, ଜମିଦାରୀ ମହାଜନୀ ସୁରକ୍ଷାରେ ଚଳିଯିବ । ସେଥିପାଇଁ ମୋହନୀ ସୁତରେ ରହି ସଂସ୍କୃତ କଲେଜରେ କଞ୍ଚନ ଶିକ୍ଷା କରୁଥିଲେ ମଣିଷଟିଏ ହୋଇଥାନ୍ତା । ତୁମେ ଖାଲି ତା'ର କଥ ରେ ଭୁଲିଲ । ହୁଁ, ମାଇନର ଖଣ୍ଡ ତ ପାଶ୍ କରିଥିଲୁ, ଇଂରେଜୀ ଦି' ପଦ ଜାଣିଲୁ, ପୁଣି କଣ—ନା, ହାଇସ୍କୁଲରେ ପଢ଼ିବ, ମୋ ସାଙ୍ଗପିଲେ ପଢ଼ୁଛନ୍ତି ! ହଇଏ, ତୁମେ ତ ଏତେ ବଡ଼ ସିରସ୍ତାରେ କାମ କର ଆସିଲ—କେଉଲ ବୋଲ୍‌ରେ କଥା ବାଡ଼ କେଉଁଲ, ମୋତେ ବି ଝପାଁଇଲ । ମୋହନୀ ଏବେ ପୁଜା ଛୁଟିରେ ହାଇସ୍କୁଲ ବନ୍ଦ ହୋଇ ଯିବାରୁ ଗାଁକୁ ଆସିଥିଲାବେଳେ ତା'ର ଯେଉଁ ଢଙ୍ଗ ଢାଙ୍ଗ ଦେଖିଲି, ସେଥିରେ ମୁଁ ଥର୍ଥ କାବା ! ଆଉ ଯାହା କରୁଛି କରୁଛି, ବ୍ରାହ୍ମଣ ପିଲା ହୋଇ ବେଳରେ କାହାର ପଇତା ନ ରହିବ ! ଏସବୁ ଇଂରେଜୀ ପାଠର ଲକ୍ଷଣ । ଯେ ପଢ଼ିଲା ସେ ଖିରସ୍ତାନ ହେଲା ଜାଣ । ହୁଁ, କେତେ ଶିବ ପୂଜି ଗୋଟିଏ ବୋଲି ସମ୍ବଳ ପାଇଥିଲି, ସେ ପୁଣି ଏପରି ! ନିଜ କାନ୍ଧକୁ ଠୁଙ୍କି ରହିବା କଥା, ଆଉ କଣ ?"

ଏଥି ମଧ୍ୟରେ ଅଙ୍ଗୁରି ତାର ବଳଦ ଦି'ଟା ଗାଧୋଇପାଧୋଇ ଦେଇ ଓ ନିଜର ଓଦା ଲୁଗା ଚିପୁଡ଼ାଚିପୁଡ଼ି କରି, ପାଞ୍ଚଣ ଖଣ୍ଡ ଧରି ବଳଦଙ୍କ ପଛେ ପଛେ ବୁଲିଲା ଏବଂ ମନେ ମନେ କହୁଥାଏ, "ଏଇ ଦି'ଜଣ ବାଙ୍ଗ ଧରମ ଆଉ କରମରେ ପୃଥିଠାକୁ ଠେଲି ଧରିଛନ୍ତି, ମୋ ଖାଉନ୍ଦ ହେଲେ ବଟାଇ, ଗାଁ ଯାକ ହେଲେ ଧରମ ଦ୍ରୋହୀ, ତାଙ୍କୁ ତ

ନା, ଯୁଆଙ୍କ ଜଗୃରରେ ଭାଜ ଭାଜ ଆମେ ହୋଇଥାନ୍ତୁ ଘୋଷୁ ମଇଁଷି । ଆମ ହାସ୍ୟ ଭାମ ନେଇ, ଆମଠାରୁ ସାରତଢ ଖାଇ ଆମ ଦେହ ଦେହରେ ଜର ଚଢାଉଥାନ୍ତେ, ଲୋକପର ରକ୍ତ ଶୋଷି ଦିଏ, ଆଉ ଯୁଆଙ୍କର ଅଂଶ ବଂଶ ସମସ୍ତେ ହେବେ ଧନକୁବେର, ଆମେ ଓ ଆମର ପିଲାପିଲାଙ୍କା ଛୁଆମାନ ହୋଇ, ଓଷୁଧ ଟିକିଏ ନ ପାଇ, ଗଡୁଥାଉଁ ପଲ୍ଲେ ଜଡସ୍ୱରେ । ଓଃ, ଭଗବାନଙ୍କର କ ବୃଥାମଣା ? ସତେ କଣ ରାଣୀ ସ୍ୱଇକ ହେବ, ଆମକୁ ଦାନା ଦନା ମିଳିବ !”

ଅଖୁରୁ ଖବରରେ ଦେଶେତ ଖାତ ପ୍ରତିଘାତ ସହୁ ସହୁ ଆସିଛି । ବଇ ବାଡ଼ ଛପର ଘର ଦ'ବଖର ତିଆର କରି ତାର ଛୋଟ ପରିବାର-ଟିର ମୁଣ୍ଡ ଗୁଞ୍ଜିବାକୁ ମହାଜନ ରାମରାମ ମିଶ୍ରଙ୍କ ଠାରୁ ଅଶୀ ଟଙ୍କାର ହ୍ୟାଣ୍ଡନୋଟ୍‌ରେ ରସିଦ ଟିକଲ ମାତ୍ର ଟିପ ଚିହ୍ନ ଦେଇ ସୁନେଶ ଟଙ୍କା ଆଣିଥିଲା । ଶଙ୍କର ଦାଶଙ୍କ ଘରେ ହୁଳିଆ ହୋଇ ଦୁଇ ବର୍ଷ ରହିବା ପରେ ଜରକ କଳନ୍ତର ମିଶି ଅଶୀଟଙ୍କା ଦେବା ପରେ ମଧ୍ୟ, ହ୍ୟାଣ୍ଡନୋଟ୍‌ଟି ଏପର୍ଯ୍ୟନ୍ତ ଫେରସ୍ତ ପାଇ ନାହିଁ । ଶଙ୍କର ଦାଶଙ୍କ ମଧ୍ୟ-ସ୍ଥତା ମଧ୍ୟ ବିଫଳ ହୋଇଛି । ତେଣେତେଣେ ସେ ନଳେ ଦେହରେ ଗାମୁଛା ପକାଇ ଘଣ୍ଟା ଘଣ୍ଟା ଧରି ଭୂଇଁରେ ପଡ଼ି ପାଉଁଲଗି ହୋଇଛି, ଝିଅ ଝିଅ ଦିଲ୍ଲି ଲୁହ ବୁହାଇଛି । ତେବେ ଅନ୍ତର ବେଦନାର ତପ୍ତ-ଶ୍ୱାସ ତାର ନାକ ପୁଡ଼ା ଦେଇ ବାହାରି ଯାଇଛି, ହାୟ—ତେବେ ବି ତାହାର ଗୁହାରି ଶୁଣା ହୋଇ ନାହିଁ । ବରଂ ଦେଓ୍ୟାନ ମଧ୍ୟ ମହାପାତ୍ରଙ୍କର ତା' ପ୍ରତି କଡ଼ା ହୁକୁମ ହୋଇଛି—ସେ ଯଦି ଖଦଡ଼ୀ, ଧର୍ମ ଦ୍ରୋହୀ, ମେଳିଆ ଶଙ୍କର ବାବୁଙ୍କର ହୁଳିଆ ଗିରି ଛାଡ଼ିଦେବ ଓ ତାହାର ଦୁହାଁଳି ଗାଈଟିକୁ ତାଙ୍କୁ ଦେବ, ତେବେ ସେ ମହାଜନଙ୍କ ପାଖରେ ସୁପାରିଶ କରି ହ୍ୟାଣ୍ଡନୋଟ୍ ଫେରାଇ ଦେବେ ।

ଅଖୁରୁ ତ ତା ସାଆନ୍ତ ଘରୁ କାଟି ଗଉଣୀଏ ଧାନ ପାଏ । ସେ—ମାମୁଁ ମାଇଁ ଦୁଇପ୍ରାଣୀ, ଝିଅ ଓ ପୁଅ ଦୁଇଟି । ଏତିକି ସେତିକି ବ'ସେଇ ଦ୍ୱାଳ ନ ହେଲେ ପଟିଆରେ ପାଣି ପଡ଼େ ନାହିଁ । ଗାଈଟି

ଯାହା ବା ପଥସେର ଦୁଧ ଦିଏ, ତାହା ଏ ମହର୍ଘ ଦିନରେ ଲୁଣ ତେଲକୁ ଅଣ୍ଟେ ନାହିଁ । ସବୁବେଳେ ତ ନିଜେ ଓ ପିଲାକବିଲାଙ୍କ ଉଦର ମହଜ ପାଇଁ ଚିନ୍ତା କରନ୍ତା ଦ'ଖଣ୍ଡ ଦରକାର । ତା ବାଦେ, ଯେବେ ଜରୁର ହେଲେ ଜ୍ଞାତି ପାଠକ, ବନ୍ଧୁବାନ୍ଧବ, ବ୍ରାହ୍ମଣଙ୍କୁ ନା ଓ କେହୁ ମୁଣ୍ଡ ଫେରେ ଅଛି ତ ? ଭିଟାମାଟି ଛଡ଼ା ଆଉ କାର୍ଡ଼ି ଯୋଗକୁ ଯୋଗେ ତ ନାହିଁ । ଗାଈଟିକୁ ଦେଇଦେଲେ ସେ ଗୃହ ସଂସାର ଚଳାଇବ କିପରି ? ହ୍ୟାଣ୍ଡନୋଟ୍ ନାଲିସ କରିବେ ବୋଲି ମହାଜନ ଅନେକ ଥର ଧମକ ଦେଇ ସାରିଲେଣି—କିନ୍ତୁ ଅଖୁସି ଯେ ଜଣେ ନାମ୍ବିକ ସମାଜ ସଂସ୍କାରକଙ୍କ ବାହୁ ଛାୟାରେ ଅଛି ! ତେଣୁ ତା'ର ସାହସଟା ବୁକୁ ଭିତରେ ଥଇଥାନ ଧରି ରହିଛି । କେତେବେଳେ କେତେବେଳେ ତେଣୁ କହି ପକାଏ, "ହୁ' ହେ, ମୁଁ ତ କଂସାରି ଘର ଝିଅ, ମୋ ଆଗରେ କେତେ କଲି ଡାଉଁ ଡାଉଁ କରୁଛ ? ଯାହା କରିବ ତ କରିବ, ଭଅ ବୋଲି କଣ କଡସ୍ତ ଗୋଡ଼ି ହେଲେ ଯମ ଛାଡ଼ିବ ?"

ନାସ୍ତିରେ ଥିଲେ ବିପଦ ଆପଦ କୁହେଳିକା ପରି ଦୃଢ଼ତାର ସାହସ ରଶ୍ମିରେ ନିମିଷକ ମାତ୍ରେ ମିଳେଇଯାଏ । ତେଣୁ ଅଶ୍ରୁର ଏହାହିଁ ଏକମାତ୍ର ସମ୍ବଳ ।

---

# ତୃତୀୟ ପରିଚ୍ଛେଦ

ତୁଳସୀ ଦୂରପଥକୁ ବାସେ, ବହୁଅଡ଼ ଦୂର ପଥକୁ କୁଣ୍ଠାଇ ହୁଏ । ମୋହିନୀ ମୋହନଙ୍କର ରୂପ ତଥା ଗୁଣ ତାଙ୍କର ଛାତ୍ର ସଙ୍ଗୀମାନଙ୍କୁ ବିଶେଷ ମୁଗ୍ଧ କରି ପାରିଛି । କିନ୍ତୁ ସେ ରଙ୍ଗିନ ଯୌବନର ଚମକ ସ୍ପର୍ଶ ଲାଭକରି ନିଜର ସରଳ ମନ ଦ୍ୱାରା ସ୍ଥିର ବୁଦ୍ଧିକୁ ଶାଣିତ କରି ପାରିଲେ ଓ ଦିନକୁ ଦିନ ଅସାଧାରଣତ୍ୱ ଲାଭ କରିବାରେ ଅଗ୍ରସର

ହେବେ । ତାଙ୍କର ପାଠ୍ୟ ବିଷୟରେ ଅଭିନିବେଶ, ମିତାଚାର, ମିଷ୍ଟାଳାପ ଓ ପ୍ରଭା ଦେଖିଲେ କିଏ ନ କହିବ ଯେ, ସେ ଦିନେ ପ୍ରତିଷ୍ଠାପନ୍ନ ଲୋକମାନଙ୍କ ମଧ୍ୟରେ ଜଣେ ବୋଲି ଗଣିତ ହେବେ ? ତାଙ୍କର ସେହି ସୁଷ୍ଠ-ସୁଠାମ—ସୁନ୍ଦର—ତନୁକୁ ସୂକ୍ଷ୍ମ ଖଦଡ଼ର ପଞ୍ଜାବି ଓ ଧୋତି ଏବଂ ଚରଣରେ ଚପଲ ଠିକ୍ ଖାପ ଖୋଇଯାଉଛି । ପ୍ରତ୍ୟକ୍ଷ କନ୍ଦର୍ପ-ମୂର୍ତ୍ତି ମୋହିନୀ ମୋହନ ସ୍ୱ ମୋହନ ରୂପରେ ମନମୋହିନୀମାନଙ୍କର ମନ ମୋହିବାକୁ ଏ ଧରା ପୃଷ୍ଠକୁ ଓହ୍ଲାଇ ଆସିଛନ୍ତି ।

ମୋହିନୀଙ୍କର ଜନନୀ ଦିନେ ଅବାକ ହୋଇ ତାଙ୍କୁ କହିଲେ, “ମୋହନ, ଆଜିକାଲି ତ ପିଲାମାନଙ୍କୁ କାଲେଜ ପଢ଼ାଇବାରେ ପଛେ ଅଧେ ବହିବାକୁ ଡର ମାଡ଼ିଲାଣି । ତେବେ ମୁଁ ଏତିକି କହି ଦେବାକୁ ଚାହେଁ ଯେ, ତୁମର ପଢ଼ା ପଢ଼ି ଓ ଘରର, ପୁଝାରୀଙ୍କ ପାଇ ମାସିକ ଯେଉଁ କେତେଶହ ଟଙ୍କା ଚଳିବାକୁ ଖର୍ଚ୍ଚ ପଡ଼ୁଛି, ତାହା ଯଦି କମିବା ହେଉ ଥାଏ, ତେବେ ଗୋଟିଏ ଟିଉସନ ମାଷ୍ଟର ରଖିବାକୁ ମୁଁ ତୁମକୁ ବାରମ୍ବାର କହି ଆସୁଛି । କିନ୍ତୁ ତୁମେ ଶ୍ରେଣୀରେ ପ୍ରଥମ ହେଉଛ ବୋଲି ମନରେ ଯେଉଁ ଗର୍ବ କର, ଖାଲି କେଉଁଠି କଂଗ୍ରେସ ସଭା କେଉଁଠି ସୋସାଲିଷ୍ଟ ସଭା ବା କେଉଁଠି କମ୍ୟୁନିଷ୍ଟ ସଭାରେ ଯୋଗ ଦେଇ, ସେମାନଙ୍କ ପାଇଁ ବୃଥା ପଇସା ଖର୍ଚ୍ଚ କରୁଛ କାହିଁ ? ‘ଅ’ ବଳଦ ମୋତେ ବାନ୍ଧ; ଘରେ ଲଜ୍ଜ ଗାଁରେ ଗୋଟାଏ ଚଣ୍ଡିକଥା ରହି ଲୋକଙ୍କୁ ଇମିତି କରି ଦେଲଣି ଯେ, ଗୋଟିଏ ବେଠି ଦେବାର କରିବାକୁ ବା ଶାଗ ମାଛ ଧରି ତ ଦେହି ଭେଟିବାକୁ ଆସିଲେ ନାହିଁ । ତୁମେ ସେ ମହର୍ଷିଙ୍କୁ ପ୍ରଶ୍ରୟ ଦେବା ଦ୍ୱାରା ଆମର ପଇସାରେ ଛଡ଼; ଆଉ ତୁମର ମୁଣ୍ଡ ଉପରେ ମ୍ୟାଟ୍ରିକୁଲେସନ ପରୀକ୍ଷା; ସେଥିରେ ଯଦି ପାଶ ନ କର ତୁମର କଲେଜ ପଢ଼ାର ଇତି ହେଲା ଜାଣ ।

ଏଥିରେ ମୋହିନୀ ବିନୀତ ସ୍ୱରରେ ତାଙ୍କୁ ଚାହିଁ କହିଲେ, “ନନା, ମୋତେ କ୍ଷମା କରିବେ, ଉତ୍ତର ଦେଲେ ଚଳୁ ନାହିଁ, ତ ନ ଦେଲେ ଚଳୁ ନାହିଁ । ଆପଣ ଦେଖିବାକୁ ଚାହାନ୍ତି, ମୋ ପାଇଁ ଯାହା

ଖର୍ଚ୍ଚ ହୁଏ, ତାହା ଯେପରି ପାଣିରେ ନ ପଡ଼େ, ଅର୍ଥାତ୍ ମୋତେ ମଣିଷ କରିବାକୁ ସ୍ୱଚ୍ଛାନ୍ତ ଆପଣ, ମୁଁ ଆଉ ପିଲା ନୁହେଁ, ମୋର ବି ହିତାହିତ ଜ୍ଞାନ ଆସିଲାଣି । ମୁଁ ଓ ମୋର ଅନୁଗୃହୀତ ଲୋକମାନେ ଚଳାଚଳ ହେବା ପାଇଁ ଆବଶ୍ୟକୀୟ ଖର୍ଚ୍ଚ ମୁଁ କରେ; କିନ୍ତୁ ଉଦ୍‌ବୃତ୍ତ ଯାହା ମୁଁ ବଳାଇବାକୁ ଚେଷ୍ଟା କରେ, ତାହା ଯେପରି ମୋର ଦେଶର ଅସହାୟ ଭାଇ ଭଉଣୀଙ୍କ ଉପକାରରେ ଆସିବ ଏବଂ ଭଗବାନ ମନୁଷ୍ୟ କରି ମୋତେ ଜନ୍ମ ଦେବା ଯେପରି ସାର୍ଥକ ହେବ, ତାହା ମଧ୍ୟ ଦେଖିବା ମୋର କର୍ତ୍ତବ୍ୟ । ନନା ! ମୁଁ ଯଦି କର୍ତ୍ତବ୍ୟରେ ହେଳା କରିଥାଏ ମୋତେ ଦଣ୍ଡ ଦିଅନ୍ତୁ; ମୁଁ ତାହା ଅମ୍ଳାନ ବଦନରେ ଗ୍ରହଣ କରି ନେବ ।”

ରାମରାମ ମିଶ୍ରେ ପୁଅର ଏକବାଧ ଉତ୍ତର ଓ ବ୍ୟବହାରରେ ମନ ମଧ୍ୟରେ ପ୍ରୀତ ହେଲେ ମଧ୍ୟ ତାଙ୍କର ସ୍କୁଲ ପରୀକ୍ଷାର ମନସ୍ତାତ୍ତ୍ୱିକ ପ୍ରଭାବ ହୃଦୟ ମଧ୍ୟରେ ଗୋଟାଏ ଝଞ୍ଜା ସୃଷ୍ଟି କଲା । ସେହି ମୁହୂର୍ତ୍ତରୁ ସେ ସ୍ଥିର କଲେ, “ଲଙ୍କାରେ ହୁରି ଶବ୍ଦ କେବଳ ଲଙ୍କା ନାଶର କାରଣ ।” ଆଉ ମଧ୍ୟ ଆମ୍ଭେମାନେ ଶୁଣିବାକୁ ପାଇଲୁ, ସେହି ଦିନଠାରୁ ମିଶ୍ରେ ତାଙ୍କର ଏକୋଇର ବଳା ବସ୍ତିକେଶନର ଗତି ବିଧିରେ କୌଣସି ସନ୍ଦେହ କରନ୍ତି ନାହିଁ । ମୋହିନୀ ମଧ୍ୟ ତାଙ୍କର ସାଧନା କ୍ଷେତ୍ରରେ ଉପଯୁକ୍ତ ସାଥୀ ଲାଭ କରିବାକୁ ବସିଲେ ।

କପିଳ ବୟସରେ ମୋହିନୀଙ୍କଠାରୁ ବର୍ଷେ ବଡ଼ ହେଲେ ମଧ୍ୟ ସେ ତାଙ୍କୁ “ଭଇନା, ଭଇନା” ବୋଲି ପାଣି ପିଏ ନାହିଁ । ଦୁହେଁ କ୍ଲାସରେ ଏକାଠି ବସନ୍ତି, ଘରେ ଏକାଠି ପଢ଼ନ୍ତି, ଯେଉଁଆଡ଼େ ଯାଆନ୍ତି ସଙ୍ଗ ହୋଇ ଯାଆନ୍ତି । ସେମାନଙ୍କର ଆକାର, ବର୍ଣ୍ଣ ଓ ଗତିବିଧି ଦେଖିଲେ, କେହି କହିବ ନାହିଁ ଯେ, କପିଳ ଗୋଟିଏ କରଣ ଘର ପିଲା । ମନେତ ଯେପରି ଗୋଟିଏ ବୃନ୍ତର ଦୁଇଟି ପୁଷ୍ପ ଜାତ ହୋଇ ଜନ ସମାଜରେ ସ୍ୱ ସ୍ୱ ସୌରଭ ବିକାଶ କରିବାକୁ ଉନ୍ମୁଖ । କପିଳଙ୍କର ପିତାଙ୍କ ନାମ ବିବେକାନନ୍ଦ ମହାନ୍ତି । ସେ ଜଣେ ସୁଖର ନାମଜାଦା

ଡାକ୍ତର । ଡାକ୍ତରୀ ବ୍ୟବସାୟରେ ବହୁତ ଅର୍ଥ ଉପାର୍ଜନ କରିବା ସଙ୍ଗେ ସଙ୍ଗେ ନୂତନ ସ୍ୱଜନ ଶ୍ରେଣୀ ଗଣ ବା ତାଙ୍କେ ଲୋକ ଗଣ, ସେ ସମସ୍ତଙ୍କର ବଡ଼ ପ୍ରିୟ । ତାଙ୍କ ହାତଟି ଯେପରି ଚିକିତ୍ସା କ୍ଷେତ୍ରରେ ଅମୃତ ହସ୍ତ, ସେହିପରି ଅତି ବୟସ୍କ, ସମ ବୟସ୍କ ବା ଅଳ୍ପ ବୟସ୍କଙ୍କ ସଙ୍ଗେ ମିଷ୍ଟାଳାପ ଓ ଥଟ୍ଟା ତାମସା ଦ୍ୱାରା ସେ ସମସ୍ତଙ୍କ ମନ ରଞ୍ଜନ କରି ପାରନ୍ତି । ବଡ଼ ବଜାର ଉପରେ ଘର—ଦଶ ବାର ବର୍ଷରୁ କମ ନୁହେଁ । କୁଟୁମ୍ବ ମଧ୍ୟରେ ସେ, ତାଙ୍କ ସ୍ତ୍ରୀ ଅନ୍ନପୂର୍ଣ୍ଣା ଦେବୀ, ବଡ ପୁଅ ବିପିନ ବିହାରୀ, ତାଙ୍କ ତଳେ କନ୍ୟା ପ୍ରେମଲତା ଓ କୋଳରେ ଗୋଟିଏ ଶିଶୁ ପୁତ୍ର—ନାମ ବିକ୍ରମ କେଶରୀ ।

ଅନ୍ନପୂର୍ଣ୍ଣା ଜଣେ ସାଧାରଣ ସ୍ତ୍ରୀ ବା ମା ନୁହନ୍ତି । ତାଙ୍କର ଶିକ୍ଷା ବିଶ୍ୱବିଦ୍ୟାଳୟର ପ୍ରବେଶ ଦ୍ୱାରକୁ ଟପି ଯାଇଛି, ଦୀକ୍ଷା ମଧ୍ୟ ଡେଲାଙ୍ଗରେ ଗାନ୍ଧୀ ସେବା ସଂଘର ବାର୍ଷିକ ଅଧିବେଶନ ହୋଇଥିଲା ବେଳେ ଉତ୍କଳର ନାରୀ ନେତ୍ରୀ ଶ୍ରୀମତୀ ସରଳା ଦେବୀଙ୍କର ପ୍ରେରଣାରେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଠାରୁ ନେଇଥିଲେ ବୋଲି ସେ ଅନେକ ଥର ସଭା ସମିତିରେ ବକ୍ତୃତା ଦେଲାବେଳେ କଥା ପ୍ରସଙ୍ଗରେ କହୁଥାନ୍ତି । ସେ ଜଣେ ସଚ୍ଚୋଟ କଂଗ୍ରେସ କର୍ମୀ, ସେଣୁ ଖଦଡ଼ର ଶାଢ଼ୀ ଓ ବ୍ଲାଉଜ ପିନ୍ଧନ୍ତି ଏବଂ ଘରେ ବସି ବାକ୍ସ ଅରଟରେ ସୂତା କାଟନ୍ତି । ଖାଲି ସେବିକା ନୁହେଁ ବକ୍ତୃତା ଦେଲାବେଳେ ସେ ଜଣେ ଉତ୍ଫଣ ଫଣୀ । ଏହାଛଡ଼ା ତାଙ୍କର ମଗୁଣି ବହୁତ । କଂଗ୍ରେସ ଅଫିସ କାର୍ଯ୍ୟ ଇନ୍ତଜାମ କରିବା ପାଇଁ ତାଙ୍କୁ ବିଶେଷତଃ ଜିଲ୍ଲା କଂଗ୍ରେସର ସମ୍ପାଦିକା ରୂପେ ନିଯୁକ୍ତ କରାଯାଇ ଥିବାରୁ ନାନା ଧନୀ-ମାନୀ ଲୋକ ନିଜର ବାକ୍ୟଚାତୁରୀ ଦ୍ୱାରା ଭୁଲାଇ କଂଗ୍ରେସ କାର୍ଯ୍ୟ ପାଇଁ ପାଣ୍ଠି ସଂଗ୍ରହ କରନ୍ତି । ଏହି କାରଣରୁ ପୁରୀ ଜିଲ୍ଲାର ଗାଁ ଗଣ୍ଡାରେ ତାଙ୍କ ଦ୍ୱାରା ସ୍ତ୍ରୀ ଓ ପୁରୁଷ ମହଲରେ କଂଗ୍ରେସ ପ୍ରଚାର, ଯୁବକ କର୍ମୀମାନଙ୍କର କର୍ମଠତା, ହରିଜନମାନଙ୍କର ଜନ୍ମଗତ ଅଧିକାର ହାସଲ କରିବାରେ ସେମାନଙ୍କର ନିର୍ଭୀକତା ଜଣା

ନିବାରଣ, ବିଦେଶୀ ଦ୍ରବ୍ୟ, ଅଖାଦ୍ୟ ଓ ଅସ୍ପୃଶ୍ୟତା ବର୍ଜନ, ଖଦ୍ଦର ପ୍ରଚାର ଆଦି ତାଙ୍କ ବିଶେଷ ଭାବରେ ସ୍ପର୍ଶିଥିଲା ।

ସେ ବାଳିକାମାନଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ସ୍ଥାପନର ପକ୍ଷପାତୀ ଥିଲେ । ତାଙ୍କ ମତରେ ପୁରୁଷ ଓ ପ୍ରକୃତି ପରସ୍ପର ଅବିଚ୍ଛିନ୍ନ । ପରମ ପୁରୁଷଙ୍କଠାରୁ ଇଚ୍ଛାରୂପୀ ଆଦ୍ୟଶକ୍ତି ବା ପରମ ପ୍ରକୃତି ଜାତ । ପୁଣି ଆଦ୍ୟଶକ୍ତିଙ୍କ ଠାରୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, ଏହି ତ୍ରିଶକ୍ତି ବା ତ୍ରିମୂର୍ତ୍ତିଙ୍କର ଜନ୍ମ ବୋଲି ମହାଗ୍ରନ୍ଥମାନଙ୍କରେ ଏହି ଦାର୍ଶନିକ ତତ୍ତ୍ୱ ଓତଃ ପ୍ରୋତ ଭାବରେ ସନ୍ନିବିଷ୍ଟ ଅଛି । ଈଶ୍ୱରସୃଷ୍ଟ ମନୁଷ୍ୟେତର ପ୍ରାଣୀମାନଙ୍କ ମଧ୍ୟରେ ଲିଙ୍ଗଭେଦ ଦୃଷ୍ଟିରୁ ଏକ ଶ୍ରେଣୀ ଅନ୍ୟ ଶ୍ରେଣୀ ସହ ଅବାଧରେ ସ୍ୱକର୍ମ କୁଶଳତା ପ୍ରଦର୍ଶନ କରିବାରେ କୌଣସି ବ୍ୟତିକ୍ରମ ଘଟିବାର ଦେଖାଯାଏ ନାହିଁ । ତେବେ ସେହି ଅମୃତର ସନ୍ତାନ ଓ ପ୍ରାଣୀ ଶ୍ରେଷ୍ଠ ବୋଲାଉଥିବା ମାନବ, ବିଶେଷତଃ ସଭ୍ୟତାକୁ ବିଜ୍ଞାନର ଯୌବନ ସ୍ତରକୁ ଉନ୍ନୀତ କରିପାରୁଥିଲେହେଁ, କେଉଁ ବୈଜ୍ଞାନିକ ଦୃଷ୍ଟି ଭଙ୍ଗିରୁ ନାରୀକୁ ପୁରୁଷ ସମାଜର ଭିନ୍ନ କ୍ଷେତ୍ରରେ ବିଚ୍ଛିନ୍ନ କରି ରଖିଛି, ତାହା ବୁଝି ହୁଏ ନାହିଁ । ପୃଥିବୀର ସଭ୍ୟତର ଦେଶମାନଙ୍କ ସହ ଶିକ୍ଷା, ସହକର୍ମ, ସହ ଚିନ୍ତା ଓ ସହ ଉଦ୍ଦେଶ୍ୟ ପାଇଁ ଯଥେଷ୍ଟ ଅବସର ହୋଇଥିଲେ ହେଁ, ଆମ ଦେଶର ଏପର୍ଯ୍ୟନ୍ତ ନିଦ ନ ଭାଙ୍ଗିଥିବା ବଡ଼ ପରିତାପର ବିଷୟ । ଏ ଦେଶ ସରକାର, ତଥା ଦେଶବାସୀଙ୍କର ସେ ଦିଗରେ ହାର୍ଦ୍ଦିକ ଆଗ୍ରହ ଥିଲା ଭଳି ବୋଧ ହେଉ ନାହିଁ । କାରଣ ବାଳିକା ସ୍କୁଲ କଲେଜ-ମାନଙ୍କର ସ୍ୱତନ୍ତ୍ର ସ୍ଥିତି, ଦେଶ ଶାସନ ଓ ସଂସ୍କୃତିରେ ସ୍ତ୍ରୀମାନଙ୍କ ପ୍ରତି inferior complex ବା ଦୁର୍ବଳ ପ୍ରତି ତାଚ୍ଛଲ୍ୟ ଭାବ ରହିଥିବା ସ୍ପଷ୍ଟ ପ୍ରତୀତ ହୁଏ ।

ଯାହା ହେଉ ଏହାର ଦୂରୀକରଣାର୍ଥେ ଅନ୍ନପୂର୍ଣ୍ଣା ଏକ ଶକ୍ତିଶାଳୀ ଅଭିଯାନ ଚଳାଇଥିଲେ । ପୁରପଲ୍ଲୀରେ ଜନମତ ସଂଗଠନ କରିବା ଉଦ୍ଦେଶ୍ୟରେ ଅହୋରାତ୍ର ସେ ଭ୍ରମଣ କରିବାରେ ବ୍ୟସ୍ତ । କିନ୍ତୁ

ହେବେଳ ଉଣଶଣୀଳ ସେବେ ତାଙ୍କ ପଛରେ ନାକ ସିଙ୍କୁଟେଇ ସଭା ମାନଙ୍କରେ ପୋଡ଼ ପଡ଼ାନ୍ତି ।

ଏବେ ପାଠକଗଣ ମୌଲ୍ଲାର ସତ୍ୟସ୍ୱରୂପ ସୂଚନା କହୁଲେ, କେଶିବ ନାହିଁ ପଣ୍ଡିତ ମହୋଦୟ, ଅଚ୍ୟୁତାନନ୍ଦଙ୍କ ମାଳିକା ଭଣ ମିଛ ହୋଇ-ଗଲା ? ଅସିବେ ମୋହନ ମୃଗଲ, ପୃଥିବ ହୋଇବେଟି ସଲ । ଯେ ଯାହା କୁଳର ବେସର, ସ୍ଥାଣ ଗମିବେ ଅବାଟର । ଏଣୁ ହୋଇବେ ଅଲ୍ପାୟୁଷ, ପାପେ ସବଳେ ଯିବେ ନାଶ—ଇତ୍ୟାଦି, ଇତ୍ୟାଦି ।

ଆମ କେନ୍ଦୁଝରେ ତ ଦେଖିଲେ, ବଡ଼ ଦେଉଳରୁ ପଥର ଖସିଲା, ଜଗନ୍ନାଥଙ୍କ ସୁନା ଥାଳି ଚୂନା ହେଲା । ସମସ୍ତେ ତ ଏଡ଼ାଡ଼ାର ହେଲେଣି । ଆଉ ଯାହା ବାକି ଅଛି, ଆମ ପିଲାମାନେ ଦେଖିବେ । କୁଳ ଭୁଆସୁଣୀ କେଉଁକାଳେ ଅସି ଦାଣ୍ଡରେ ଉଭା ହେଉଥିଲେ ?—ଏହା ତ କେଖା ନ ଥିଲା ! କାଳ ସିନା ଲଟାରେ ପଶିଲା ! "ଖଣ୍ଡିଆ ମଉଷା ତ ମେଣ୍ଢା ଲୋମକୁ ଉଡ଼ାଦେଇ । ମଉଷା ନାସ ଟିପେ ନାକରେ ଗୁଞ୍ଜି ହାତ ଝାଡ଼ିଦେଇ ହା—ଆ—ଆ—ଆ ହୁଁ, ବୋଲି ନାକରୁ ପାଣି ନଗାଡ଼ି କହୁଲେ, "ଅରେ ବାପା, କଳିକ ଥିବୁ ତୁ କେତେକୁ; ତଉଦ ପଦର ଦେଖୁ ନ ରହୁଛେ ସତ ଉପୁଜିବ ସତରକୁ । କୁଳସ୍ତ୍ରୀ ବେଳକୁ ଘୋଡ଼ାମୁହାଁ ପୁଅ ଜାତ ହେବେ । ଆଉ ଆମେ ତମେ ତୁଚ୍ଛାରେ ପାଟିକଲେ କାଳକୁ ଅଟକାଇ ପାରିବା ?"

ପିତାମାତାଙ୍କର ଶିକ୍ଷା, ଗୁଣ ଓ ସ୍ୱଭାବ ସନ୍ତାନମାନଙ୍କ ଉପରେ ଉତ୍ତରାଧିକାର ସୂତ୍ରରେ ଅଲକ୍ଷ୍ୟ ଭାବରେ କାର୍ଯ୍ୟ କରୁଥାଏ । ଅବିନାଶ ଓ ପ୍ରେମଲତା ସ୍ନେହ, ଶୃଙ୍ଖଳା ଓ ପ୍ରାଚୁର୍ଯ୍ୟ ମଧ୍ୟରେ ବଢ଼ି ଆସିଛନ୍ତି । ପିତାମାତାଙ୍କ ମଧ୍ୟରେ ଅଭେଦ ପ୍ରୀତି ଦେଖି ଏବଂ ପରସ୍ପର ସୁଖ ଦୁଃଖରେ ଭାଗୀ ହୋଇଥିବାର ଦୃଷ୍ଟାନ୍ତମାନ ଅନୁଭବ କରି, ଭାଇ ଭଉଣୀ ଦୁହେଁ ପିତାମାତାଙ୍କ ଛାଞ୍ଚରେ ଗଢ଼ା ହେଉଥିଲେ । ଅବିନାଶ ଭଉଣୀକୁ ଏତେ ସ୍ନେହ କରନ୍ତି ଯେ, ପ୍ରେମଲତା କୌଣସି

କାରଣରୁ ସ୍କୁଲରୁ ଆସିବାର ଡେରି ହୋଇଥିଲେ, ତାଙ୍କୁ ଠାକ ରଖୁଥାନ୍ତି ଏବଂ ସାଙ୍ଗରେ ନ ବସାଇ କେବେ ହେଲେ ଆଗ ଭାତ ଖାଆନ୍ତି ନାହିଁ ।

ବିପିନ ମେଧାବୀ, ଶାନ୍ତ, ସ୍ପଷ୍ଟବାଦୀ ଓ ପରଦୁଃଖ-କାତର ଥିଲେ । ସେ ନିଜର ଦୈନନ୍ଦିନ ପାଠ ଶେଷ କରି, ନିଜ ସାଇପଡ଼ିଶା ବା ପାଖଆଖ ଅଞ୍ଚଳରେ କାହାର ଦେହଅସୁଖ ବା ଅସହାୟପଣ ଦେଖିଲେ, ତାଙ୍କର ସାଧ୍ୟାନୁଯାୟୀ କାୟମନୋବାକ୍ୟରେ ତାହାକୁ ସାହାଯ୍ୟ କରିବାକୁ, ତାଙ୍କର ଦୈନିକ କର୍ତ୍ତବ୍ୟ ନିର୍ଘଣ୍ଟରେ ସ୍ଥାନ ଦେଇଥାନ୍ତି । ସେ ମଧ୍ୟ ପିତାଙ୍କର ବ୍ୟବସାୟ କାର୍ଯ୍ୟ ଜାରି ରଖୁଥିବା ସମୟ ମଧ୍ୟରେ ପିତାଙ୍କୁ ଔଷଧମାନଙ୍କର ମିଶ୍ରଣ ପ୍ରସ୍ତୁତ କରିବାରେ ସାହାଯ୍ୟ କେଇଥାନ୍ତି । ତେଣୁ କେତେକ ଔଷଧ ବିଷୟରେ ତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ଥିଲା । ସେହି ଜ୍ଞାନର ଉପଯୁକ୍ତ ପ୍ରୟୋଗ ମାନସରେ ନଦୀ ବଢ଼ି ସମୟରେ ବା ସଂକ୍ରାମକ ରୋଗ ପ୍ରସାର ଲାଭ କରୁଥିବା ବେଳେ ଅଧ୍ୟୁଷିତ ଅଞ୍ଚଳମାନଙ୍କୁ ଯାଇ ବିପଦାପନ୍ନ ନିରାଶ୍ରୟ ଲୋକ-ମାନଙ୍କୁ ଔଷଧ, ସାଗୁ, ବାର୍ଲି ଓ ଚିନି ବାଣ୍ଟୁଥିଲେ ।

ବିପିନଙ୍କ ସଙ୍ଗେ ମୋହନ ମଧ୍ୟ ଏହିପରି ସେବା କାର୍ଯ୍ୟରେ ନିଯୁକ୍ତ ଥିବାର ବରାବର ଦେଖାଯାଉଥିଲା । ଅଞ୍ଚଳର ଅଧିବାସୀମାନଙ୍କ ମଧ୍ୟରୁ କେହି କେହି ସେ ଦୁହିଁଙ୍କୁ ଅଶ୍ୱିନୀ କୁମାର ବୋଲି କହି ପକାନ୍ତି । କୌଣସି ପରିଚିତ ନିଃସ୍ୱ ପରିବାର ମଧ୍ୟରେ ବାଧକା ପଡ଼ିଥିଲେ, ସେ ଦୁହେଁ ଔଷଧ ଓ ପଥ୍ୟ ନେଇ ସେବାଶୁଶ୍ରୂଷା କରନ୍ତି ଏବଂ ରାତି ଜାଗି ମଧ୍ୟ ରୋଗୀକୁ ଜଗି ରହନ୍ତି । ଧୋଇଆ ଅଞ୍ଚଳରେ ଚନ୍ଦା, ଚାଉଳ, କିରୋସିନି ଓ ଔଷଧପତ୍ର ନେଇ ଲୋକ-ସେବା ସଂଘ ବା ଭାରତ ସେବା ସଂଘ ପକ୍ଷରୁ ବାଣ୍ଟିବାକୁ ସେମାନେ ଆଗଭର ହୋଇ ଯାଉଥିଲେ । ଗ୍ରୀଷ୍ମାବକାଶ ବା ପୂଜା ଛୁଟିରେ ଅନ୍ୟାନ୍ୟ ଛାତ୍ର ଆମୋଦ ପ୍ରମୋଦରେ ମାତିଥିବାବେଳେ, ସେମାନଙ୍କୁ ଦୂର ପଲ୍ଲୀ ଓ ସହରର ଉପକଣ୍ଠ ପଡ଼ା ଗାଁମାନଙ୍କର ଦୁର୍ଗତ ଠାଙ୍ଗୀ

ସ୍କୁଲ, ସ୍କୁଲାରୀ, ମଠ ବା ମନ୍ଦିରରେ, କେତେକ ନଯୁକ୍ତ ସ୍ୱଷୀ ମୂଳଅଙ୍କ ଦ୍ୱାରା ପରିଚାଳିତ ହୋଇ, ଅକ୍ଷର ଶିକ୍ଷା ଦେବା, ଦେଶ ବିଦେଶର ସ୍ୱଷୀ ମୂଳଅଙ୍କ କଥା କହିବା ଓ ସମ୍ବାଦ ପତ୍ର ପଢ଼ି ଶୁଣାଉଥିବାର ଦେଖାଯାଏ । ଅଭ ମଧ୍ୟ ଲୋକମାନଙ୍କର ଅପରିଷ୍କାର-ତାଯ୍ୟ ଦେଖିଲେ, ଜଣାପଡ଼େ ସେମାନଙ୍କୁ ଶିକ୍ଷା ଦେବାର ପ୍ରଣାଳୀ ବେଶ ମାଲୁମ ଅଛି । ଖବର କାଗଜ, ଛୋଟ ଛୋଟ ଗଳ୍ପ ବହି, ଆମେରିକା ଓ ରୁଷର ଗୋଟ ବାଡ଼ ଓ କଳ କାରଖାନାରେ କାମ କରୁଥିବା ଲୋକମାନଙ୍କର ଚିତ୍ର, ଆମୋନିଆ, ସଲଫେଟ୍, ହାଡ଼ଗୁଣ୍ଡି ପ୍ରଭୃତି ବିଭିନ୍ନ ସାରର ନମୁନା ପ୍ରଭୃତି ନେଇ ଅଶିକ୍ଷିତ ଗ୍ରାମବାସୀଙ୍କୁ ନାନା ଶିକ୍ଷାମୂଳକ ବକ୍ତୃତା ଦେବା ଓ ସେମାନଙ୍କର ସ୍ନେହ ଆକର୍ଷଣ କରିବା ଦେଖିଲେ ମନେହୁଏ, ସେ ବୁଝେଁ ନିଶ୍ଚୟ ଏକେ ପୁଣି ପ୍ରତିଷ୍ଠିତ ହେବେ । ବାସ୍ତବରେ ସେମାନଙ୍କର ସାହସ ମଧ୍ୟ କମ୍ ନୁହେଁ । କଥାରେ ପସ୍ କହନ୍ତି, 'ଆପଣା ଭୂଇଁ ମଶାଣି, ପରଗାଁ ପାଣିକୁ ସମସ୍ତଙ୍କର ଡର ।" କିନ୍ତୁ ଟାଙ୍ଗିଆ ଦଳ, ବୋରଝାଞ୍ଜି, ଓ ବାଲ୍ଟି ଦଳରେ ଆବଦ୍ଧ ଥିବା ବଜାର ଗାଁମ ତତ୍ତ୍ୱରେ ପଶି ଦଳ ବାନ୍ଧିବା ଓ ତାଙ୍କ ଦେଖା ଦେଖି ଗ୍ରାମର ଯୁବକ ଓ ବୃଦ୍ଧ ସେମାନଙ୍କୁ ଅନୁସରଣ କରିବା ପୋଖରୀ କୂଳରୁ ଦଳ, କାଦୁଅ ମାଟି ଓ ଗାଁ ରାସ୍ତାରୁ ଅଳିଆ ଆବର୍ଜନା ନେଇ ଗାଁ ବାହାରେ ଖାଲ କରି ପୋତିବା ଏବଂ ସେହି ଦଳ ଓ ଆବର୍ଜନା ପଚିଗଲେ କିପରି ଉତ୍ତମ ଖତ ସାରରେ ପରିଣତ ହେବ ଓ ଶସ୍ୟ ଉଆସର ସାର ଖାଦ୍ୟ ହେବ—ଏହିପରି କେତେକ କାର୍ଯ୍ୟ କରି ଦୃଷ୍ଟାନ୍ତ-ମୂଳକ ଉପଦେଶ ଦେବା ସେମାନଙ୍କର ନିଶ୍ଚୟ ଅତି ପ୍ରଶଂସନୀୟ କର୍ମ । କୌଣସି କୌଣସି ସମୟରେ ଗ୍ରାମବାସୀଙ୍କର ଏକତା ରକ୍ଷା ପାଇଁ ଛୋଟ ଛୋଟ କଳି ତକରାର - କପଟ ଆପୋଷରେ ମେଣ୍ଟାଇବାକୁ ହେବ—ତାହା ଗ୍ରାମ ସଭାରେ ମୁଦ୍ଦେଇ ମୁଦାଲାଙ୍କର ଦୋଷ ଗୁଣ ନିଜେ ନିଜେ ବାଛିବାକୁ ଓ ଶେଷରେ ଦୁର୍ବଳ ପକ୍ଷର ଦୋଷ ସ୍ୱୀକାର ଏବଂ ସବଳ ପକ୍ଷର କ୍ଷମା ଦାନ ଦ୍ୱାରା, ଅନ୍ତେଣରେ ତୁଟାଇ ଦେଇପାରୁଥିଲେ । ଏଥିରେ କେତେକ ଗାଁ ଟାଉଟରଙ୍କ ରୋଜଗାରେ ବାଧା ପଡ଼ୁଥିଲେ ମଧ୍ୟ,

ଲୋକେ ସେପରି ଗ୍ରାମର ଖଣ୍ଡୁକୁ ଚଲ ଚଉ ଖଣ୍ଡି ଯାଉଥିଲେ । ଗାଁରେ କୁଟିର ଶିଳ୍ପର କପରି ଉନ୍ନୟନ ହେବ, ସେଥିପାଇଁ ସେମାନେ ବଢ଼େଇ, କମାର, ତନ୍ତୀ, କୁମ୍ଭାର, ଡମ ଓ ଚେଉସ୍ମାନଙ୍କୁ ନାନା ରକମ ଜଳଷର ସୁନ୍ଦର ସୁନ୍ଦର ଡିଜାଇନ ଯୋଗାଇ ଦେଉଥିଲେ ଏବଂ ସେହି ସେହି ଦ୍ରବ୍ୟର ନିର୍ମାଣ କୌଶଳମାନ ସୂତ୍ରଧରମାନଙ୍କୁ ପଢ଼ି ବୁଝାଇ ଦେଉଥିଲେ ।

ପ୍ରେମଲତା ଏମାନଙ୍କ ଠାରୁ ବୟସରେ ସ୍ୱଚ୍ଛ ପାଞ୍ଚ ବର୍ଷ ସାନ । ତାର ସୌମ୍ୟ ମୂର୍ତ୍ତି ସୁଷ୍ଠୁ ଅଙ୍ଗ ପ୍ରତ୍ୟଙ୍ଗ ଦେଖି ଦେହ ଦେହ କହୁ କହନ୍ତି, ତାକୁ ପନ୍ଦର ବା ଷୋଳ ହେବ । କିନ୍ତୁ ଜାତକ ଗଣନାନୁସାରେ ତାକୁ ମୋଟେ ବାର ବର୍ଷ । ତାର ତୁଷାର ଧବଳ ରୂପ ଦେଖି ମା କହିଲେ, "ଏହାର ନାଁ ଦେବା ହିମପତ୍ର ।" କିନ୍ତୁ ବାପାଙ୍କର ସେ ସ୍ୱର୍ଗ ଆଦରର ଧନ ହୋଇଥିବାରୁ ତାର ନାମ 'ପ୍ରେମଲତା' ଦେବାକୁ ବିବେକାନନ୍ଦ ବାବୁ ସ୍ୱପତ୍ନୀଙ୍କୁ ଅନୁରୋଧ କଲେ । ତେଣୁ ଅନ୍ନପୂର୍ଣ୍ଣା ପତିଙ୍କ ଇଚ୍ଛା ବିରୋଧୀ କାର୍ଯ୍ୟ କରିପାରି ନ ଥିଲେ । ଯେତେ ଖଣ୍ଡ ଟାଏ ହୋଇ ଥାଉ ପଛେ ତାହାର ଯୌବନର ପ୍ରାକ୍‌କାଳରେ ଗୋଲାପୀ ରୂପ ଲାବଣ୍ୟ ଦେଖି ଘଡ଼ିଏ ନ ଚାହିଁ ରହି ପାରିବ ନାହିଁ । ପ୍ରେମଲତା ସ୍ଥାନୀୟ ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କରୁଥିଲା । ପ୍ରତିଦିନ ବଗିନ କାର ସାଥିରେ ସ୍କୁଲକୁ ଯିବା ଆସିବା କରେ । କେବଳ ସାଥୀ ବାଳିକା ପିଲାଏ ବ୍ୟାଡ଼ମିଣ୍ଟନ ଖେଳିବାକୁ ସ୍କୁଲ ଛୁଟି ପରେ ସମୟେ ସମୟେ ଅଟକାଇ ରଖି ନିଅନ୍ତି । ନ ହେଲେ କାର ଭଉଣୀ ଦୁହେଁ ସାଇକେଲରେ ଯା ଆସ କରୁଥାନ୍ତି । ସେ ଘରେ ପଢ଼ାପଢ଼ି ବାହାରେ, ବାପମାଙ୍କର କାମରେ ସାହାଯ୍ୟ କରୁଥିଲା । ବାପା କହନ୍ତି, "ପ୍ରେମ ତାଙ୍କର ଗୃହଲକ୍ଷ୍ମୀ ।" ତାହାର ଅବସର ସମୟରେ କ୍ରୁଷରେ ବୋତାମ ଫିତା, ବ୍ୟାଗ୍ ବା କଣ୍ଟାରେ ସ୍ୱେଟର, ମୋଜା ପ୍ରଭୃତି ବୁଣି ଘର ତାହାର ଫର୍ମାସୀ ତୁଲାଇବାକୁ କେବେହେଲେ କୁଣ୍ଠିତ ହୁଏ ନାହିଁ । ସଙ୍ଗୀତରେ ସେ

ମଧ୍ୟ ପାଉଗଡା ଲାଭ କରିଥିଲା । ପ୍ରତ୍ୟେକ ମଣିଷ ତା'ର ସେହି ସୁଲଳିତ କଣ୍ଠଧ୍ୱନି ଯେତେବେଳେ ବାତାୟନ ଦେଇ ବାହାରେ ତରଙ୍ଗାୟିତ ହେଉଥାଏ, ସେତେବେଳେ ଯେଉଁ ଲୋକ ଏହି ସ୍ୱର ଶୁଣୁଥାଏ, ସେ ମୁଗ୍ଧ ହୋଇ ରହୁ-ଯିବାର ଦେଖା ଯାଉଥାଏ ।

ଏପରି ଗୋଟିଏ ରୂପ ଗୁଣ ବିଭୂଷିତା ବାଳିକାକୁ ଦେଖି କାହାର ମନରେ ଅପୂର୍ବ ପ୍ରୀତିର ସଞ୍ଚାର ବା ନ ହେବ !

ବିପିନର ସାଥୀ ହିସାବରେ ମୋହନାମୋହନ ଅନେକ ଥର ତାଙ୍କ ଘରକୁ ଯିବା ଆସିବା କରି ବିବେକାନନ୍ଦ ବାବୁ ଓ ତାଙ୍କ ପତ୍ନୀଙ୍କ ସଙ୍ଗେ ଘନିଷ୍ଠ ପରିଚୟ ହୋଇ ଯାଇଥିଲେ । ଅନ୍ନପୂର୍ଣ୍ଣା ମଧ୍ୟ ପର୍ବପର୍ବାଣୀରେ ମୋହନାଙ୍କୁ ନିମନ୍ତ୍ରଣ କରି, ଜଳପାନ କରିବା ପାଇଁ ବିପିନ ଦ୍ୱାରା ଘରକୁ ଡକାଇ ଆଣନ୍ତି । ଏହିପରି କିଛିଦିନ ଅତିବାହିତ ହେବା ପରେ, ସେ ଦିନେ ମୋହନାଙ୍କର ଜଳପାନ ଗ୍ରହଣ କରୁଥିବା ସମୟରେ କହିଲେ, "ମୋହନ, ମୁଁ ବିପିନ ଠାରୁ ଶୁଣିଥିଲି, ତୋତେ ତୋ'ର ବସାଠାରୁ ସ୍କୁଲକୁ ଯିବା ପାଇଁ ବହୁତ ଦୂର ପଡ଼ୁଛି । ବିପିନ ମଧ୍ୟ ତୋ ଠାରୁ କ୍ଷଣେ ସଙ୍ଗଛଡ଼ା ହେବାକୁ ନାହିଁ । ଏଠାରେ ତ ଆମେ ରହିବାକୁ ସାତ ଆଠ ବଖରା ଘର ଡେରା । ଆଉ ଦୁଇ ବଖରାରେ ତୋର ଶୋଇବା ଘର । ବୁଢ଼ାଙ୍କର ପଢ଼ାଘର ଏବଂ ସେପାଇଁ ଓ ପୁଅଙ୍କ ସ୍ୱଚ୍ଛନ୍ଦ ପାଇଁ ମଧ୍ୟ ଅକୁଲାଣ ହେବ ନାହିଁ । ସେଠାରେ ତାହିଁକି ମିଛରେ ପନ୍ଦର ତୋଟିଏ ଟଙ୍କା ଭଡ଼ା ଗଣୁଛୁ ? ସେହି ଟଙ୍କାଟା ତେତୋଟି ଗରିବ ଛାତ୍ରଙ୍କ ମଧ୍ୟରେ ମାସକୁ ମାସ ବାଣ୍ଟି ଦେଉଥିଲେ, ସେମାନେ ବି ଅନ୍ତତଃ ପଢ଼ିପାରନ୍ତେ, ଆଉ ମଧ୍ୟ ତୋର ଟଙ୍କାଟା କ୍ଷତି ହେବାର ପାଣିରେ ପଡ଼ନ୍ତା ନାହିଁ । ଧନ ଅର୍ଜିଲେ ଧର୍ମ କର, ଧର୍ମେ ପ୍ରାପତ ନରହରି—ଏ ଋଷି ବାକ୍ୟ କଦାପି ମିଛ ନୁହେଁ, ବାପ ! ତା ବାବୁ ମଧ୍ୟ ଏକଥା ଆଗରୁ ମୋଠାରୁ ଶୁଣି ରାଜି ହୋଇଛନ୍ତି । ତୋର ଆପତ୍ତି କଣ ?"

ମେହୁଣୀ ବଶିନଙ୍କ ଭୋଉକୁ 'ମା' ବୋଲି ସମ୍ବୋଧନ କରୁଥିଲେ । ତେଣୁ ଅନ୍ନପୂର୍ଣ୍ଣା ମୋହିନୀଙ୍କୁ ମଧ୍ୟ ପୁତ୍ରବଧୂଙ୍କ ସ୍ନେହ କରିବା ସ୍ୱାଭାବିକ । ମୋହିନୀ ମାଙ୍କ'ଠାରୁ ପୂର୍ବ କଥିତ ଅଖ ବାକ୍ୟଟି ଶୁଣି ବଡ଼ ମୁଗ୍ଧ ହୋଇଥିଲେ । ସୁତରାଂ କୌଣସି ଦ୍ୱିଧା ନ କରି ସେହିକ୍ଷଣି ମନରେ ସମ୍ମତି ପ୍ରକାଶ କରି କହିଲେ, "ବାସ୍ତବିକ, ମା ! ତୁମେ ଅଚଣ୍ଡାଳ, ବ୍ରାହ୍ମଣ, ଧନୀ, ଦରିଦ୍ର, ଯୋଗ୍ୟାଯୋଗ୍ୟ, ସମସ୍ତଙ୍କର ମା । ତୁମ୍ଭଭଳି ଶତ ଶତ ମାତାଙ୍କର ବାତ୍ସଲ୍ୟ ଲାଭ କରି ଏ ଦେଶର ସନ୍ତାନଗଣ ଧନ୍ୟ ହୁଅନ୍ତୁ ।"

ତତ୍ପର ଦିନ ଠାରୁ ମୋହିନୀଙ୍କର ଆସ୍ଥାନ ଦେବେନ୍ଦ୍ରନାଥ ବାବୁଙ୍କ ଘରର ଉପର ମହଲରେ ।

---

# ଚତୁର୍ଥ ପରିଚ୍ଛେଦ

ଯାହାର ମନ ଯହିଁକି ଯାଏ, ପଲଉ ଫିଙ୍ଗି ପଖାଳ ଖାଏ । ଗୋବର୍ଦ୍ଧନ ମଲ୍ଲିକ ତାହାରେ ଦୃଷ୍ଟାନ୍ତ । ତାର ଗୋଷ୍ଠୀର ସାତ ପୁରୁଷ କଥା ଗଣ୍ଡା ଚକଟା କଲେ ଜଣାଯାଏ, ଖୋର୍ଦ୍ଧାରେ ଭୋଇ ବଂଶୀୟ ରାଜାମାନେ ରାଜତ୍ୱ କଲାବେଳେ ତାର ପୂର୍ବ ପୁରୁଷ ଦେହୁ ଜଗାର ସିଂହୁରେ ହେଉଭା ଜାଗିର ପାଇ ନିଜ ଗଡ଼ର ହେଣ୍ଡିଆ ଦାୟୀ କରୁଥିଲା । ପାଇକ ବିଦ୍ରୋହ ସମୟରେ ତାର ବାପ, ଗୋପେଇଁବାପ ଷଡ଼ଯନ୍ତ୍ରରେ ଲିପ୍ତ ଥିବା ଅଭିଯୋଗରେ ଦଣ୍ଡିତ ହୋଇ ସ୍ଥାନ ଚ୍ୟୁତ ହୋଇଥିବାର ସ୍ପଷ୍ଟ ପ୍ରମାଣ ମିଳେ । ଯେହେତୁ ଜନ୍ମ କର୍ମସୂତ୍ର ହେଉ ପଛେ, ଜଣେ ନିମକ ସଭା ଭୃତ୍ୟ ଥିବାରୁ ବିଦ୍ରୋହୀ ମଲ୍ଲିକ ବଂଶ ପିଲା କୁଟୁମ୍ବ ଧରି ରାମଚନ୍ଦ୍ର ପୁରରେ ପୁରୀ ମହାରାଜାଙ୍କ ଠାରୁ ମିଳା ଜଳା ଜମି ଓ ଦେବୋତ୍ତର ଜଳ ଜମି ପାଇ ବସବାସ କଲା ।

ଇଂରେଜ ଶାସନରେ ମୋଗଲ ଶାସନରୁ ସର୍ବ ନମ୍ର କର୍ମଚାରୀ ଚୌକିଦାର। ଏହି ଚୌକିଦାରୀ କାର୍ଯ୍ୟରେ ସାଧାରଣତଃ ଦଣ୍ଡସି-ମାନଙ୍କୁ ନିଯୁକ୍ତ କରାଯାଇଥାଏ। ଏପରି ନିଯୁକ୍ତିର ଗୋଟାଏ କାରଣ କହୁ ନା କହ ପଛ। ଦଣ୍ଡାସି ଜାତି ହିନ୍ଦୁ ସମାଜରେ ଉଚ୍ଚ ଜାତିର ହିନ୍ଦୁମାନଙ୍କ ଦ୍ୱାରା ଅସ୍ପୃଶ୍ୟ ବୋଲି, ସେ ଜାତି ପ୍ରତି ସ୍ପୃଶ୍ୟ ହିନ୍ଦୁମାନେ ବହୁ ତାଚ୍ଛଲ୍ୟ ପ୍ରଦର୍ଶନ କରି ଆସିଛନ୍ତି। ତେଣୁ ସେମାନଙ୍କର ଶିକ୍ଷା ସଂସ୍କୃତିରେ ଏପର୍ଯ୍ୟନ୍ତ କିଛି ପରିବର୍ତ୍ତନ ଆସି ନାହିଁ। ଇଂରେଜ ସରକାର ଚ୍ୱେରନାରୀ, ଦଙ୍ଗାହାଙ୍ଗା ଅପରାଧ ଦମନ କରିବା ପାଇଁ ଏହି ଦଣ୍ଡସି ଜାତିର ଲୋକଙ୍କୁ ଚୌକିଦାର କାର୍ଯ୍ୟରେ ନିଯୁକ୍ତ କରିବା ଦ୍ୱାରା ସବର୍ଣ୍ଣ ଓ ଅସବର୍ଣ୍ଣ ହିନ୍ଦୁ ଅପରାଧୀ ହୋଇ ସେମାନଙ୍କ ହାତରେ ବନ୍ଧା ହୋଇ ଥାନା ବା ଜେଲକୁ ଯିବାକୁ ନିଶ୍ଚୟ ଭୟ କରିବେ ଏବଂ ଅପରାଧ ସଂଖ୍ୟା କମିଗଲେ, ପୁଲିସ କର୍ମଚାରୀ ମଧ୍ୟ କମ୍ ନିଯୁକ୍ତ ହେବେ। ଏହି ହେତୁ ଗ୍ରାମର ଚୌକିଦାର ଅଧିକାଂଶ ଦଣ୍ଡସି ଜାତିର।

ଆମର ଗୋବର୍ଦ୍ଧନ ମଲିକ, ଡାକନାମ ଗୋବରା, ରାମଚନ୍ଦ୍ରପୁର ଚୌକିଦାର ଅଟେ। ମାସକୁ ତାର ବେତନ ମୋଟେ ସା'ତୁଟା ଟଙ୍କା। କେବଳ ଗ୍ରାମବାସୀ ଭୋଟ ବୈଠକ କରି ସ୍ଥିର କରି ଦେଇଥିଲେ ଯେ, ସେ ବର୍ଷକୁ ବର୍ଷ ଧାନକଟା ସମୟରେ ଘରକେ ଗୋଟିଏ କରି ଚ'ଗଉଣିଆ ହଳା ପାଇବ। ଏହାଛଡ଼ା ତା'ର ପୋଲ୍ଟ୍ରୀ, ଖଇଞ୍ଚି, କଡ଼ା, ଜାଲ, ଫନ୍ଦୁଣୀ ଓ କାନ୍ତପ ବୃଷିକା ଓ ସ୍ତ୍ରୀ ଲୋକମାନଙ୍କର ଶୁଖି ଧାନ ଅଟୁକିବା, ଦଇଁବେଣ ଓ ମୁଣ୍ଡା, ପଦ୍ମଫୁଲ, ଶିଙ୍ଗଡ଼ା ଇତ୍ୟାଦି ଅଣ୍ଡାଏ ପାଣିରେ ପଶି ସଂଗ୍ରହ କରିବା କାମ ହେଉଛି ପ୍ରଧାନ। କିନ୍ତୁ ଏହାବୋଲି ଦଇବାଳରେ ସେମାନଙ୍କୁ କାମ କରାଇବାରେ କିଛି ଆପତ୍ତି ନାହିଁ।

ଏବେ ବାଚ୍ଛ ବସ୍ତିର ରହୁଥିଲେ ମଧ୍ୟ "ଡକା ନିସ୍ତାର ଚାନ୍ଦ ଆଇଁଷ" ଏହି ଗୋଟାଏ ପ୍ରଥା ଆମର ନିଶାଖୋର ହିନ୍ଦୁମାନଙ୍କ

ମଧ୍ୟରେ ପ୍ରଚଳିତ ଅଛି । ସେ ଦୃଶ୍ୟ ସାଧାରଣତଃ ହିନାଥମେଳା ଯାଗା ବା ଆଖଡ଼ାଘରେ ଦେଖାଯାଏ । ଦୋଇଲେ, ଦୁଇଏ ବା ଅଧିରିଏ ଗଞ୍ଜେଇ ଦଳି, କିଛିତ ଧୂଆଁ ପତ୍ର ଓ ଦ'ଚାରି ଠୋପା ପାଣିକୁ ଏକତ୍ର କରି ବାଁ ହାତ ପାପୁଲିରେ ରଖି ଡାହାଣ ହାତ ବୃଦ୍ଧାଙ୍ଗୁଳି ଦ୍ୱାରା ଚିପିକରି ମଳାଯିବା ପରେ, ଗୋଟିଏ ଫରସ୍ମୁହାଁ ମାଟିର ବା ଧାତୁର ନଳୀ—ପ୍ରିୟନାମ ତାର 'ଚିଲମ' ମଧ୍ୟରେ ପଣେ ଓ ନଡଆ-କତାରେ ଗୁଲି ତିଆରିକରି ନିଆଁ ଧରାଇ ଚିଲମ ମୁହଁରେ ଟିପ ସାହାଯ୍ୟରେ ମାଡ ଦିଆଯାଏ । ତା'ପରେ ଖଣ୍ଡେ ଚଉଡା ଓଦାକନା ଚିଲମ ମୂଳରେ ଗୁଡ଼ାଇ, "ବଂ ଭୋଳାନାଥ, ଶିବ ଶମ୍ଭୁ, ତାନ ଦେ ଧରମକା ତମ୍ବୁ । ଜଉତ୍ସ୍ର ଖଣ୍ଡକେ ଋଷି; ଗଞ୍ଜା ଭୃଙ୍ଗମେ ଖୁସି । ଏ ଗାଞ୍ଜା ନହିଁ ନିରଞ୍ଜନ ହୈ; ଭଲେକାଦା ମଞ୍ଜନ ହେ, ବଂ—ଭୋଳାନାଥ", ବୋଲି ଗୋଟାଏ ବିକଟାଳିଆ ରବ ଦ୍ୱାରା ପଞ୍ଚାଏ ଧୂମ୍ରପାୟୀଙ୍କ ମୁଖ ସହିତ ଚିଲମର ଘନ-ଘନ ସଂଯୋଗ ହୁଏ । ଧୂମାୟିତ ବାୟୁର ଅଘ୍ରାଣ ଓ ଚିଲମ ଶମ୍ଭୁଙ୍କର ଜାତିଧର୍ମ ନିର୍ବିଶେଷରେ ଗଞ୍ଜେଡ଼ମାନଙ୍କ ମୁଖରେ ପ୍ରସାଦ ଦାନ ହିନ୍ଦୁ ଜାତିର ଭେଦାଭେଦଜନିତ ଦୁର୍ଦୋଷ-ତାକୁ କିଛିତ ଶିଥିଳ କରି ସାମ୍ୟବାଦ ପ୍ରଚାର କରେନାହିଁ କି !! ମାତ୍ର ଏବଂଭୂତ ପ୍ରଣାଳୀ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ବା ପ୍ରତିକୂଳ ଅଟେ କି ନା, ତାହାର ବିଚାର ପାଠକପାଠିକାମାନଙ୍କ ଉପରେ ନ୍ୟସ୍ତ କରିବାକୁ ଆମ୍ଭେମାନେ ଇଚ୍ଛା କରୁଁ ।

ଗାଁ ସାଆନ୍ତଙ୍କ ଘର ଆଗରେ ଗୋଟିଏ ଆଖଡ଼ାଘର । ସରଞ୍ଜାମ ଭିତରେ ଗୋଟିଏ ସିଙ୍ଗଲ୍ ହାରମୋନିୟମ, ତୁବିତବଲା ହଳେ, ନିଦିଆଖୋଳ ଗୋଟିଏ ଓ କରତାଳ ଦ'ଚାରିହଳ ପଡ଼ିଥାଏ । ଯେ ଯେତେବେଳେ ଆସେ ଠୁଙ୍ଗ୍ଠାଙ୍ଗ୍ କରେ । ଏତକ ଯାତ୍ରାହେଉ ଗ୍ରାମର ଯୁବକମାନଙ୍କର ଉଦ୍ୟମରେ ଗ୍ରାମଗ୍ରାମ ମିଶ୍ରେ ନ୍ୟାୟନିଷ୍ଠାପରେ ହୋଇଥିବା ଜରିମାନା ଫଣ୍ଡରୁ କେତେକ ଠଙ୍କା ଦେଇ କିଣି-ଦେଇଥିଲେ ।

ସ୍ୱମସ୍ୱମ ମିଶ୍ରେ ଓ ତାଙ୍କର କେତେକ ସମବୟସ୍କ, ଘର ଭିତରେ ବସି ଚିଲମରେ ଲଗାଇଛନ୍ତି ଦମ୍ । ଗୋବସ୍ୱ ଦୁଆର ମୁହଁକୁ ବସି ସମସ୍ତଙ୍କ ଆଡ଼୍ ଚିଲମ ଗୋଟାଏ ଘେର ବୁଲି ଆସିଲା ପରେ, ଟିକିଏ ପ୍ରସାଦ ସେବା କରେ ଏବଂ ତଳେ ଥୋଇଦେଲା ପରେ ପୁଣି ବ୍ରାହ୍ମଣ, କରଣ, ପଧାନ ଆଦି ସମସ୍ତଙ୍କ ଆଡ଼େ ଘେର ବୁଲେ । ଏହାପରେ ଦୁଇ ତିନି ଘେରରେ ଗୋବସ୍ୱ ପାଳି ଦୁଇ ତିନିଥର ପଡ଼େ । ବୁଝିଲେ ନାହିଁ କି ? "ଯାହାକୁ ଗଲେ କଦଳୀ ବଢ଼ା ବ ହେବ, ଧଅଁ ଦେଖା ବ ହେବ ।" ସ୍ୱମସ୍ୱମ ମିଶ୍ରେ ଇଉନିୟନ ପ୍ରେସିଡେଣ୍ଟ କି ନା ! ତେଣୁ ଫି ଦିନ ତାଙ୍କର ଦର୍ଶନ ଲାଭକରି ଓ ଗାଁର ହାକିମଙ୍କୁ ନିବେଦନ କରି କୃତକୃତ୍ୟ ହେବା ଗୋବସ୍ୱ ପକ୍ଷରେ ସହଜରେ ତ ଏକ କର୍ତ୍ତବ୍ୟ । ପୁଣି ଅନ୍ୟ ପକ୍ଷରେ ପରିବାରର ଉଦର ଜ୍ୱାଳା ଶାନ୍ତ କରିବା ପାଇଁ ତା'ର ଦିନସାରା ଝାଳ ନାଳ ବୁହା ପରିଶ୍ରମ ଓ ସ୍ୱଭାବରେ ହିଁ ପରିସ୍ୱରେ ଭଜାଘର ରହିଥିବା ହେତୁ ଢାମଦାମରେ ହାଲିଆ ହୋଇ ପଡ଼ିଥିବା ଦେହଟାକୁ ମଜଗ୍ୱ ଛଡ଼ାଇବା ପାଇଁ ବିନା ପଇସାରେ ଲଗାଇ ରୁପକ ଚିଲମ ପାଇବାକୁ ସେ ଆସେ ।

ଭଗ୍ୟକୁ ଗୋବସ୍ୱର ବଡ଼ କୁଟୁମ୍ବ ନୁହେଁ; କାରଣ କଳିଯୁଗରେ ବହୁକୁଟୁମ୍ବୀ ବଡ଼ ପାପୀ । ତା'ର ତ ଧାତ୍ରିରୁ ଅସେ ହାଣ୍ଡିରେ ପଶେ । ତା ମତରେ ଧନ ଛୁଇଁଲେ ଲୋଭ ବଢ଼ିବ, ଲୋଭରୁ ପାପ ବଢ଼ିବ ଓ ପାପରୁ ମୃତ୍ୟୁ ଘଟିବ । ନାହିଁ କି ତା ସେ ଲୋଭ କରିବ କେଉଁ ? ଖଣ୍ଡେ ବୋଲି ତ ମାଇକିନିଆ ଝିଅ, ସେ ତ ଶାଶୁଘରକୁ ଗଲେ ଗଲା । ଆଉ ତ ଫକତ ରହିଲେ ମାମୁଁ ମାଇଁ ଦି'ପ୍ରାଣୀ । ଆଉ କାହାପାଇଁ ଲୋଭ କରିବ ।

ଝିଅଟିର ନାଁ ଦେଇଥିଲା ସେ ବାସନ୍ତୀ । ତାର ସେ ବଡ଼ ଆଦରର ଧନ । ତୁମେ ବାସନ୍ତୀକୁ ସହରେ ଠିକ୍ କରାଇ ଦେଇଥିଲେ କେତେ କରଣ ଘର ଝିଅ ଅଢେଇ ଯିବେ ନା— ! ଗୋଟିଏ ସ୍ୱୁଲରେ ପଢ଼ା ପଡ଼ୁ ! ରୂପ ଦେଖିଲେ, ଯିମିତି ଚନ୍ଦ୍ର ଉଇଁଆ ମନ

କରୁଛି । ବାସନ୍ତୀର ମା ତାକୁ ଲୁଅଡ଼େ ଛାଡ଼େ ନାହିଁ । ଛାଡ଼ିଲେ ତା ମୁଣ୍ଡରେ ଗୋବର ଝୋପାଟାଏ ଓ ତାହା ଦେହକୁ ଥୁ ଥୁ କରି ଛେପ ଛାଟି ଅଇଁଠା କରି ଦେଇଥାଏ । ଯିମିତି ଡାହାଣୀ ବା ଘୋଷାଣୀଟାଏ ପ୍ରକାଶ ହୋଇ ନ ଯାଏ । ମା'ର ଗୋଟାଏ ସର୍ବଦା ଚିନ୍ତା—ନୀଚ କୁଳରେ, ପୁଣି ଗରିବ ଘରେ ଜନ୍ମ ହୋଇ ଜ୍ଞାନ ନ ଜାଣୁ ତ ବାସୀର ଇମିତି ହୃଦୟୀ କଳଅର ଫୁଲ ପରି ଦେହେସ୍; ଅଉ ସେ ଘରଯୋଗ୍ୟ ହେଲେ ତାକୁ କମିତି ଦୁର୍ବୃତ୍ତ ଭ୍ରମରମାନଙ୍କଠାରୁ ରକ୍ଷା କରିବ !

ଅହୋ ଲୀଳାମୟଙ୍କର କି ବିଚିତ୍ର ଲୀଳା ! ମାନବର ସସୀମ ବୁଦ୍ଧି ସେହି ବିଶ୍ୱ-ବିରାଟ-ପୁରୁଷଙ୍କର ଅସୀମ ଲୀଳା ଶକ୍ତିକୁ ହୃଦବୋଧ କରିବାକୁ କଳ୍ପ କଳ୍ପ ଯୁଗ ଯୋଗଧ୍ୟାନ କଲେ ସୁଦ୍ଧା ତାହାର ଆଦିଅନ୍ତ ପାଇବାକୁ ଅସମର୍ଥ । ମଦମତ୍ତ ଭ୍ରମର ପ୍ରସ୍ଫୁଟିତ ପୁଷ୍ପମାନଙ୍କର ସୌରଭରେ ଆକୃଷ୍ଟ ହୋଇ ଏକ ପୁଷ୍ପରୁ ଅନ୍ୟ ପୁଷ୍ପକୁ ମଧୁ ଚୁମ୍ବନ କରିବାକୁ ଯାଏ । ପୁଷ୍ପ ତାର ସରଳ ଉଦାର ସ୍ୱଭାବ ହେତୁ ଦୁଷ୍ଟ ଭ୍ରମରର କୁଟିଳ ବୁଦ୍ଧିକୁ ଚିହ୍ନି ନ ପାରି ତାହାର ସମସ୍ତ ସୋହାଗ ଓ ସ୍ତ୍ରୀତ୍ୱ-ରତ୍ନକୁ ସମର୍ପି ଦିଏ । ଶେଷରେ କୁଳଭ୍ରଷ୍ଟତା ଦୋଷରେ ବୃନ୍ତ ଅଉ ତାକୁ ଧାରଣ ନ କରିବାରୁ ତାହା ଭୂପତିତ ହୋଇ ପ୍ରାଣ ହରାଏ । ଭ୍ରମର କିନ୍ତୁ ସମାଜଭ୍ରଷ୍ଟ ହୁଏ ନାହିଁ, କି ମରଣକୁ ସଙ୍ଗେ ସଙ୍ଗେ ବରଣ କରେ ନାହିଁ । ପୁଷ୍ପ ତ ଭ୍ରମର ପାଖକୁ ସ୍ୱଭାବତଃ ଯାଏ ନାହିଁ । ଆତ୍ମରକ୍ଷା ପାଇଁ ସୃଷ୍ଟିକର୍ତ୍ତା ତାକୁ କି ଅସ୍ତ୍ର ଦାନ କରି ଅଛନ୍ତି ? ଦୟାମୟଙ୍କର କ'ଣ ପକ୍ଷପାତିତା ହୋଇପାରେ ! ଏହିପରି ପ୍ରଶ୍ନ ଓ ବିସ୍ମୟ ସ୍ୱତଃ ମାନବର ଭ୍ରାନ୍ତ ମନକୁ ଆନ୍ଦୋଳିତ କରେ—ଏ ସଂସାରର ନାନା ସବଳ ଓ ଦୁର୍ବଳ ଶକ୍ତିମାନଙ୍କର କ୍ରିୟା ଓ ପ୍ରତିକ୍ରିୟାର ଦୃଷ୍ଟାନ୍ତରେ ।

ମୋହିନୀ ଓ ବିପିନ ମ୍ୟାଟ୍ରିକୁଲେସନ ପରୀକ୍ଷା ଦେଇ ସାରି ଦେଶ ଓ ଦଶର ସେବା କରିବା ପାଇଁ ଅଧିକତର ମନ ବଳାଇଛନ୍ତି ଏକ୍ଷଣି।

ସେମାନଙ୍କର ଅନୁରୋଧ ରକ୍ଷା କରି ବିବେକାନନ୍ଦ ବାବୁ କେତୋଟି ଔଷଧ ଦେଇ କପିଳକୁ ଅଳ୍ପ କେତେ ଦିନ ପାଇଁ ମୋହିନୀଙ୍କ ଗ୍ରାମକୁ ଯିବାକୁ ଅନୁମତି ଦେଲେ । ଦୁଇ ବନ୍ଧୁ ଗୁରୁଜନଙ୍କର ଆଶୀର୍ବାଦ ଲାଭ କରି ବଡ଼ ଉତ୍ସାହର ସହ ଚାଲିଲେ ରାମଚନ୍ଦ୍ରପୁର ଅଭିମୁଖେ । ଘରେ ପହଞ୍ଚିଲାବେଳକୁ ପ୍ରାୟ ଦେଢ଼ ରାତି ହେଲା । ସୁଲକ୍ଷଣା ଦେବୀ ପୁଅକୁ ଦେଖି ଗୋଡ଼ ତଳେ ଲାଗୁ ନାହିଁ । ଦୁହେଁ ସୁଲକ୍ଷଣାଙ୍କର ପାଦ ତଳେ ପଡ଼ି ଆଶୀର୍ବାଦ ଗ୍ରହଣ କଲେ । ମକର ବାରିକ ସାଆନ୍ତାଣୀଙ୍କ ଆଦେଶ ପାଇ ଦୁଇଜଣଙ୍କର ପାଦ ପଖାଳି ଦେଇ ଗାମୁଛାରେ ପୋଛି ଦେଲା । ତତ୍ପରେ ଉଭୟେ ଦୁଇଟି ଆସନରେ ଉପବେଶନ କଲେ ।

ସରୁ ଚାଉଳ ଓ ଛୁଞ୍ଚିପତ୍ର ପିଠା ସହିତ ଅଳ୍ପ ବାଇଗଣ ତରକାରିରେ ସାମାନ୍ୟ ଜଳଯୋଗ ଦିଅ ଗୋଟାଏ ଭଲ ଲାଗିଲା । ସନ୍ଧ୍ୟା ପୂର୍ବରୁ ଖାଇବା ରାମରାମ ମିଶ୍ରଙ୍କର ପ୍ରାୟ ପାଞ୍ଚ ବର୍ଷର ଅଭ୍ୟାସ । ରାତିରେ ଶୋଇବା ପୂର୍ବରୁ ଦୁଧ ଏକ ଗ୍ଲାସ ବ୍ୟତୀତ ସେ ଆଉ କିଛି ପାନାହାର କରନ୍ତି ନାହିଁ । କାରଣ ବାତଜ୍ୱର ଆକ୍ରମଣ କାଳଠାରୁ ଗ୍ରାମର ସୁଲବ୍ଧଖ୍ୟାତ କବିରାଜ ଶ୍ରୀ ସୋମନାଥ ରଥ ଭିଷକ୍‌ରତ୍ନଙ୍କର ପରାମର୍ଶରେ ସୂର୍ଯ୍ୟାସ୍ତ ପରେ ଅନ୍ନ ବ୍ୟଞ୍ଜନ ଆହାର ତାଙ୍କ ପ୍ରତି ପୂରାପୂରି ନିଷିଦ୍ଧ । ସୁତରାଂ ଯୋଗକୁ ମିଶ୍ରେ ସାନ୍ଧ୍ୟ ଭୋଜନ ସମାପନ କରି ନ ଥିବାରୁ ମୋହିନୀ ଓ କପିଳଙ୍କ ଚର୍ଚ୍ଚାରେ ତାଙ୍କର ଖାଦ୍ୟ ସାମଗ୍ରୀ ଖର୍ଚ୍ଚରେ ପଡ଼ିଲା । ନଚେତ ସେମାନଙ୍କୁ ଚୂଡ଼ା, ନଡ଼ିଆ ଓ ଗୁଡ଼ରେ କ୍ଷୁଧା ତୃପ୍ତ କରିବାକୁ ପଡ଼ିଥାନ୍ତା ।

ସୁଲକ୍ଷଣା ସେମାନଙ୍କ ପାଖରେ ବସିଥାନ୍ତି । "ଆଉ ଖଣ୍ଡିଏ ଖାଅ, ଦୁଧ ଟିକିଏ ଗରମ ଗରମ କରି ପିଇ ନିଅ, ଥଣ୍ଡା ହୋଇଯିବ—" ଇତ୍ୟାଦି କହିବାରେ ସେ ଲାଗିଥାନ୍ତି । କପିଳଙ୍କର ପୁରା ପରିଚୟ ନେଇ ସାରି ସେ ନିଜ ପୁଅର ଅନ୍ତରଙ୍ଗ ବନ୍ଧୁ ବୋଲି ତାଙ୍କ ମୁଣ୍ଡ

ଓଠ ଅଣ୍ଡିଷିବାକୁ ଲାଗିଲେ । ତାଙ୍କ ଅମ୍ମାବୁ କହାଣି ଚାହିଁକ ହଠାତ୍ ବାହାରି ପଡ଼ିଲା, "ଏଭଳି ଗୋଟିଏ ପୁଅ ଆଉ ମୋର ଥାନ୍ତା କି, ଠିକ୍ ଲବ କୁଶ ଭଳି ଦିଶନ୍ତେ ।" ଏହି ସମୟରେ ମଦନ ବାବୁ ଆସି ଖବର ଦେଲା, "ଇଏଁ ନା କଣ, ସାଆନ୍ତେ ଚଉପାଢ଼ୀକୁ ଦୁଲବାବୁଙ୍କୁ ଡକାଇଛନ୍ତି, ତେଇଁତାବୁ, ସେଠି ମାଣ୍ଡି ମଶିଣା ପାରିଦେଇ ଅସିଛି ଅଶ୍ୱା ସଲଖିବାକୁ । ଇଏଁ ନା କଣ, ମୁଁ କ ଟିକିଏ ବାବୁମାନଙ୍କର ଦେହରେ ମୁଣ୍ଡରେ ଦେଇଦେବି, ତେଇଁଭାବୁ କେତେବାଠ ଚାଲି ଅସିଛନ୍ତି । ଇଏ ନା କଣ, ମଙ୍ଗଳ ଭଙ୍ଗିଗଲେ ଯୁଅତେ ବୁଲିବାକୁ ମିବେନାହିଁ ? ତେଇଁଭାବୁ ଅପଣମାନେ ଚାଲନ୍ତୁ ।" ମଦନର କଥାରେ ବିପିନବାବୁ ଟିକିଏ ମଳୁଜ ହସା ଦେଉଥାନ୍ତି । କିନ୍ତୁ ତା'ର ପ୍ରତ୍ୟୁତ୍ତରରେ ମନେ ମନେ ଖୁସି ହେଉଥାନ୍ତି ।

ସୁମସ୍ୟମ. ମିଶ୍ରେ ସୁନ ଓ ସୁହବନ୍ଧୁଙ୍କ ସଙ୍ଗେ ସେମାନଙ୍କର ଓ ସଭରର ହାଲଚାଲ ସଂକ୍ଷେପରେ ବୁଝିନେଲେ । ସେମାନଙ୍କୁ ବିଶ୍ରାମ କରିବା ପାଇଁ ପରାମର୍ଶ ଦେଇ କୋଠରି ବା ଅଖଡ଼ା ଘରକୁ ଚାଲିଗଲେ । କୋଠରି ଘର ଜମାଣ ପ୍ରାୟ ହେଉ ହେଉ ସ୍ୱତ ଅଠଟା । ସେ ସମୟ ହୋଇଗଲେ ମିଶ୍ରଙ୍କର ଗଞ୍ଜେଇ ଧୂପକଥା ମନେ ପଡ଼ିଯାଏ । ସେ ଅଉ କେଉଁଠି ଗଲେ ସମ୍ଭାଳି ହୋଇ ରହି ପାରନ୍ତି ନାହିଁ । ଅଜଙ୍କ ଭୋଳାନାଥଙ୍କର ଧୂପରେ କୌଣସି ବ୍ୟତିକ୍ରମ ଘଟି ନାହିଁ । କିନ୍ତୁ ସବୁଦିନ ପରି ରଙ୍ଗ ରହସ୍ୟ, ଛନ୍ଦ ଚଉପଦୀ, ଗୀତ କାହିନ, ଭାହାଘର ଯୋଉଷ ଫଟୁଁତ୍ରା, ଭାଷ୍ଟାଘର ଝୁଙ୍କକଥା ଅଦି ଏପର୍ଯ୍ୟନ୍ତ ବସ୍ତିର ଉପରକୁ ଅସିନାହିଁ । "ଗଦେଇ କେନାର ସାନ ବୋହୂଟା ବଡ଼ କଳହୁଡ଼ୀ । ଆଉ ଧୋବସାହୁ ଝିଅ ଅଛି ଠିକ୍ ପରି ଗୋଟିଏ ଗୋଟିପିଲା ! ତେଲ ଲୁଣ କଡ଼ ଅସିଲାବେଳେ ମୁଁ ଥରେ ତା ଆଡ଼କୁ ଚାହିଁ ଆଖି ମାରିଦେଲି । ଅଉ ସେ ତ ହସି ହସି ଲୋଟଣୀ ପାସ ପରି ଗଡ଼ିଗଲା । ଦୈବାତ୍ ସେଠାରେ ଅନ୍ୟ କେହି ନ ଥିଲେ, ହେଲେ ସେ ନିଶ୍ଚୟ ଲଙ୍ଗଭଗ୍ନ ଦୋଷ ମୁଣ୍ଡାଇ ଥାନ୍ତା"—ଏହି କଥା କହି ସାଧୁ ଜମାଦାରଙ୍କ

ପୁଅ ସନ୍ତୋଷଚନ୍ଦ୍ର ବେବର୍ତ୍ତା ଘଣ୍ଟେଇଭକ୍ତ ମାନଙ୍କର ମିଜଲସ୍‌କୁ ବଡ଼ ସରଗରମ କରି ରଖିଛି । ଏକଥା ଶୁଣି ଚକ୍ରଜ ଚମକି ଠା'ରୁ ଝୁଙ୍କେଣ୍ଟେ ଉଠିଯାଇ ତଳେ ତାହାଣ ହାତଟାକୁ ବାଡ଼େଇଦେଇ କହିଲା, "ମହାଜନ ସାମନ୍ତେ ! କାଲି ମୁଁ ଗାଁ ମୁଣ୍ଡେ ବାହାର ବସିଥିଲି । କଣ୍ଠ ମିଶ୍ରେ ଆଉ ନବଘନ ଘୋଷେ କଥା ହେଉଥାନ୍ତି—"ଏ ଗାଁ'ର ଧର୍ମ ବଳରୁ ସଙ୍କର ଦାଣ ପରି ପୁଅ ଜନ୍ମ ହୋଇଛି; ନ ହେଲେ ସ୍ୱମ-ସ୍ୱମ ମିଶ୍ରର ଜାଲରେ ପଡ଼ି ଲୋକଙ୍କର ଧନ, ମାନ, ଜୀବନ ଯେ, କ'ଣ ହୁଅନ୍ତା କହି ହେଉନାହିଁ । ନବଘନ ଖାଲି ଟିହାଇ ଟିହାଇ ଦେଉଥାଏ । ଆଉ କଣ୍ଠ ମିଶ୍ରେ ଆପଣଙ୍କୁ ଯେଉଁ ଶୋଧା ଶୋଧୁ ଥାଏ, କିଏ ତା ପାଖରେ ଧରିବ ?" ସ୍ୱମସ୍ୱମ ମିଶ୍ରେ କହିଦେ ଅପ୍ରକୃତିସ୍ଥ ହୋଇ କହିଲେ, "ହଁ ଶୋଧିବ ନାହିଁ କାହିଁକି ? ପୁଅ ଖଣ୍ଡିଆ ଘରେ ଯାଜୀ ସ୍ୱମାସ୍ତା ହୋଇ ବାଠରୁ ଯାଜୀଙ୍କ ଗଣ୍ଠି କାଟି ଆଣି କ' ଶହ ବାଟି ଜମି କରି ସାରିଲଣି । ତା ମନେମନେ ସଂସାରରେ ଚନ୍ଦ୍ର ସୂର୍ଯ୍ୟ ନାହାନ୍ତି । ହଉ, ମୁଁ ଗୋଟାଏ କୌଶଳ ଲଗାଇଛି, ଜମି କେବେ ଯେ, କୁଅଡ଼େ ଫୁଙ୍କିଦେଲେ, ଧୂଆଁରେ ଉଡ଼ିଯିବ ।" ସାମନ୍ତଙ୍କର ସ୍ୱଗ କେଶି ମହନ ମହାକୁଡ଼ ଚୁପ୍ ଚୁପ୍ କରି କାନରେ କହିଲା, "ଆଜ୍ଞା କେତେଲେଇ ପାନ ଝିଅଠାର ପାଞ୍ଚମାସ ହୋଇଗଲାଣି, ଆମେ ତ ଏତେ ଚେଷ୍ଟା କଲେ ଲାଗିଲା ନାହିଁ । ଆଚ୍ଛା କିଛି କୌଶଳ କରି କଣ୍ଠ ମିଶ୍ରକୁ ସେ ମାମଲାରେ ପକାଇ ଏମିତି ହୁଲପଟ୍ଟା ଲଗାନ୍ତୁ, ଯିମିତି ସେ ଚେଂଖି ଯିବ । ସେଇଥିରେ ଯିମିତି ଥୋଡ଼ାଏ ଜମି ଖସିଯିବ ।" ସାମନ୍ତେ ତାକୁ ଟିପ ମାରିଦେଇ କଥାଟାକୁ ପ୍ରଘଟ ନ କରିବାକୁ କହିଲେ ଓ ତା କାନରେ କହିଲେ, "ଠିକ୍ ମନେ ପକାଇଛୁ, ଏଥର କଣେଇ ବାପୁଡ଼ାକୁ ଦେଖିଦେଉଛି ।" ସାମନ୍ତଙ୍କର ସଙ୍ଗେ ସଙ୍ଗେ ମନେ ପଡ଼ିଗଲା ଗୋବସ୍ୱ କଥା । ମିଶ୍ରେ ପଚାରିଲେ, "ମହାଦେବଙ୍କ ବେଲପତ୍ର ବନ୍ଦ ହୋଇଯିବ, ଗୋବସ୍ୱର ଆସିବା ବନ୍ଦ ହୁଏନାହିଁ । ଆଜି ତା'ର କ'ଣ ହୋଇଛି ? ଆଜ ତ ଥାନା ପାଳି ନୁହେଁ ।" ତୁଟିଆ ବାଉଳକୁ ଲକ୍ଷନ ଦଆହୋଇ ପଠାଗଲା ଗୋବସ୍ୱକୁ ଡାକି-

ଆଣିବାକୁ । ପ୍ରାୟ ଅଧଘଣ୍ଟାଏ ବାଦ ଗୋବରା ଲୁହୁନାଳ ହୋଇ ଆସି ଢୋଠଲ ଘର ଆଗରେ ଦୃଢ଼ କରି ଦୁ' ଚାରିଥର ମୁଣ୍ଡ ବାଡ଼େଇଦେଇ ହେ, ହେ, କରି ରଡ଼ି ଛାଡ଼ିଲା । ଖାଲି ଭୂଇଁ ଠାରୁ ଏମୁଣ୍ଡ ସେମୁଣ୍ଡ ଗଡ଼ି ଯାଉଥାଏ । ସେ ମୂର୍ଚ୍ଛନାଫଟା ବିକଳ ସ୍ୱରରେ ଯେଉଁ ଛାତିଠାଣିଆ ଲୋକ ହେଉନା କାହିଁକି, ଲୁହ ନ ଗଡ଼ାଇ ରହିପାରିବ ନାହିଁ । କୌଣସି ସ୍ତ୍ରୀ ସଦ୍ୟ ସ୍ୱାମୀହରା ହୋଇ ଯେମିତି କାନ୍ଦନ କାନ୍ଦେ, ସେହିପରି ସେ କାନ୍ଦିବାକୁ ଲାଗିଲା, "ଗସ୍ତକର ସଙ୍ଗୀନ ମୋ ବାସୀ, ତତେ ତ ମୁଁ କୁଆଡ଼େ ଛାଡ଼ି ଦେଇ ନାହିଁ ଲୋ, ମୋ ବାସୀ ଇ—ଇ । ଅରପାଣି ଯାଇଥିଲୁ ତେଲ ଲୁଣ ପାଇଁ ଲୋ, ମୋ ବାସୀ—ଇ—ଇ । ଭୂତ କି ପ୍ରେତ କଅଣ ଲାଗିଲା ଲୋ, ମୋ ବାସୀ—ଇ—ଇ—ଇ ।

ବିପିନ ଓ ମୋହିନୀଙ୍କୁ ଟିକିଏ ଛଇନିଦ ହୋଇ ଯାଇଥିଲା । ତାର ଏ ବିକଳ ଶୁଣି ଲଙ୍ଗଳା ମୁକୁଳା ହୋଇ ଧାଇଁ ଆସିଲେ । ବିପିନ ହଠାତ୍ ତାକୁ ଭୂଇଁରୁ ସାଉଁଟି ଧରାଇ ସାନ୍ତ୍ୱନା ଦେବାକୁ ଲାଗିଲେ, ମୋହିନୀ ମଧ୍ୟ ତାଙ୍କୁ ସାହାଯ୍ୟ କଲେ । ଦୁହେଁ ମିଶି କୌଣସି ପ୍ରକାରେ ତାକୁ ଠେଲାପେଲା କରି ତାର ଘରେ ଛାଡ଼ି ଆସିବାକୁ ଗଲେ । ଘରେ ଯାଇ ଦେଖିଲେ ବାସନ୍ତୀର ମା ଝିଅକୁ କାବୁଡ଼ି କରି ଧରିଛି । ତଳେ ମୁଣ୍ଡ ବାଡ଼େଇଥିବାରୁ କପାଳ ଓଳ ଫଡ଼ାପରି ଗେବା ଗେବା ହୋଇଯାଇଛି । ଲୁହରେ ଛାତି ଲୁଗା ଭିଜି ଗଲାଣି । ବାସନ୍ତୀ ଖାଲି କଳକଳା ସ୍ୱରଛାଡ଼ି କହୁଥାଏ, "ମୋତେ ଛାଡ଼ିଦେ, ମୁଁ ଯିବ, ମୁଁ ଯିବ ସେଇ ବରଗଛକୁ, ମୁଁ ଯିବ, ହୁଁ, ହୁଁ, ହୁଁ—ଇ", ଇତ୍ୟାଦି, ଇତ୍ୟାଦି ।

ଏସବୁ ଲକ୍ଷଣ ବାରି ବିପିନ ଓ ମୋହିନୀ କଣ ଇଂରେଜୀରେ ଦି'ପଦ କଥାବାର୍ତ୍ତା ହେଲେ । ମୋହିନୀ ଘରକୁ ଧାଇଁ ଆସି ଗୋଟାଏ ଚମଡ଼ା ବ୍ୟାଗରୁ ଦୁଇଟା ଶିଶି ନେଇ ବିପିନଙ୍କୁ ଦେବାକୁ ଗଲେ । ବିପିନ ମଧ୍ୟ ଗୋଟିଏ ଶିଶିରୁ ଏକଗ୍ରାମର ଔଷଧ ଗୋଟିଏ ଗ୍ଲାସକୁ ଢାଳି ଓ କିଛି ପାଣି ମିଶାଇ ବାସନ୍ତୀକୁ ପିଆଇ ଦେଲେ ଓ ପାଖରେ

ବସି ଅନ୍ୟ ଶିଶିବୁ ଠିପି ଖୋଲି ସ୍ବର ପାଞ୍ଚମିନଟ ଅନ୍ତରରେ ତାର ନାକରେ ଶୁଙ୍ଘାଉଥାନ୍ତି । ଗୋବର୍ଦ୍ଧ କାଠହୋଇ ବସି ପଡ଼ିଥାଏ । ବାସନ୍ତୀ ପାରଶୁଅରେ ପଡ଼ି ରହିଲା ଓ ତାକୁ ନିଦହୋଇ ଯାଉଥିବାର ଦେଖି ତାର ମା'କୁ ବିପିନ କହିଲେ, "ତୁମ୍ଭେମାନେ ରାତିରେ ଜାଗି-ରହିବ, ନିଦ ଭାଙ୍ଗିଲେ କେବଳ ଗରମଦୁଧ କିଛି ପିଇବାକୁ ଦେବ । ଆଉ ଏ ଔଷଧ ଦୁଇପାନ ଥାଉ, ଦୁଇ ତିନ ଘଣ୍ଟା ଛାଡ଼ି ପାନେ ପାନେ ଦେବ । ସେମିତ କିଛି ଦରକାର ପଡ଼ିଲେ ଆମକୁ ଖବର ଦେବ; ନହେଲେ ସକାଳ ହେଉ ଆମେ ନିଶ୍ଚୟ ଆସିବୁ ।"

ଏହାପରେ ଦୁଇବନ୍ଧୁ ବାହାରି ଆସିଲେ । ଗୋବର୍ଦ୍ଧ ଲଣ୍ଠନ ଧରି ସେମାନଙ୍କୁ ବଳେଇଦେଇ ଆସିବାକୁ ଗଲା ଏବଂ କେତେ ନା କେତେ ଆଶୀର୍ବାଦ କଲା; "ବାବୁମାନେ ତୁମର ଉନ୍ନତି ହେଉ । ଈଶ୍ବର ତୁମ କଲମ ତାଜା ରଖିଥାନ୍ତୁ"—ଇତ୍ୟାଦି ।

ପରେ ଜଣାଗଲା ସହରସାରା ବାବୁ ଦୁହିଁଙ୍କ ବିଷୟରେ କୋଠରି ଘରେ ବହୁତ କିଛି ଆଲୋଚନା, ସମାଲୋଚନା ହୋଇଛି । ମୋହିନୀବାବୁଙ୍କ ଶୋଇବା ଘରେ ଦୁହିଁଙ୍କୁ ଲୁଗା ପାଲଟିବାକୁ ପଡ଼ିଥିଲା ଓ ଖଣ୍ଡେ ଖଣ୍ଡେ ଯାମୁଛ ପିନ୍ଧି ସେମାନେ ରାତି ଭୋଜନ ଆଦି ଶେଷ କରିଥିଲେ । କିନ୍ତୁ ବିପିନଙ୍କୁ କାହିଁକି ଆଉ ନିଦ ଲେଉଟି ନାହିଁ । ତୁଳ୍ଳା ଶେଯ ଉପରେ ପଡ଼ି ଛଟପଟ ହେଉଥାନ୍ତି, ମ୍ୟାଡ଼ ସାଉଣ୍ଡ ଗୁଡ଼ାଏ ମଧ୍ୟ ଭାବୁଥାନ୍ତି । ଏହିପରି ନାନା ଚିନ୍ତା ଦୁଶ୍ଚିନ୍ତା କରୁ କରୁ ରାତି ପାଇଲା । ଆଉ ଯିମିତ କାଅ କରୁଛି, ବିପିନ ଯାଇ ମଳକ ଘର ଦୁଆରେ ଠିଆ । ଗୋବର୍ଦ୍ଧଠାରୁ କିଛି ସନ୍ଦେଶ ପାଇ ଓ ବାସନ୍ତୀର ଦେହ ତାଣ୍ଡ ଗୋଟିଏ ଅଗମିଟରେ ଦ୍ୱାର ପରୀକ୍ଷା କରି, ମୋହିନୀଙ୍କୁ କ'ଣ ଖବର ଦେବାକୁ ଗଲେ । ଦୁଇବନ୍ଧୁ କଥାବାର୍ତ୍ତା ହେଲେ । ବିପିନ ଆଉ କାଳ ବିଳମ୍ବ ନ କରି ବାହାରେ ବାହାରେ ପୁରୀ ରଓ୍ୟାନ କଲେ । ବାପାଙ୍କୁ ଧରି ଲେଉଟି ପଡ଼ିବାକୁ ତାଙ୍କୁ, ମୋଟେ ପାଞ୍ଚଘଣ୍ଟା ଲାଗିଥିଲା ।

ସଦେବାନନ୍ଦ ବାବୁ ରୋଗୀକୁ ଷ୍ଟେଥସ୍କୋପ ଦ୍ୱାରା ପରୀକ୍ଷା କରିନେଲେ ଓ ରୋଗୀର ନିମୋନିଆ ଲକ୍ଷଣ ଅଛି ବୋଲି କହି ଔଷଧର ବ୍ୟବସ୍ଥା କଲେ । ମାତ୍ର ରୋଗୀର ପରିଚର୍ଯ୍ୟା ଅତି-ସାବଧାନରେ କରିବାକୁ ହେବ ବୋଲି ନିର୍ଦ୍ଦେଶ ଦେଇ ମୋଟର-ସାଇକେଲ ଷ୍ଟାର୍ଟ କରିଦେଲେ । ଇତ୍ୟବସରରେ ସ୍ୱାମସ୍ୱାମ ମିଶ୍ରେ ଆସି ପହଞ୍ଚିଗଲେ ଓ ଡାକ୍ତରବାବୁଙ୍କୁ ତାଙ୍କଘରେ ଟିକିଏ ପାଦ-ପକାଇଦେବାକୁ ଅନୁରୋଧ କରନ୍ତେ, ସେ କଥା ସ୍ୱର୍ଗ ନ ପାରି ଘଣ୍ଟାକ ପାଇଁ ତାଙ୍କଘରେ ଯୁଣିଆ ହୋଇଥିଲେ ।

ବିପିନଙ୍କର ଅଦମ୍ୟ ଚେଷ୍ଟା ଓ ଅନ୍ତରର ଅପ୍ରକଟିତ ସ୍ନେହ ବାସନ୍ତୀକୁ ସପ୍ତାହକ ମଧ୍ୟରେ ଆସନ୍ନ ମୃତ୍ୟୁରୁ ରକ୍ଷା କରିଥିଲା ସତ୍ୟ; କିନ୍ତୁ ତାର ଜୀବନଦାତାଙ୍କୁ ଚିରଦିନ ପାଇଁ ତାର ନେତ୍ର ପଟଳରେ ଚିତ୍ରିତ କରାଇ କେଉଁ ଅଜଣା ଲକ୍ଷ୍ୟ ଆଡ଼କୁ ଭସାଇବାକୁ ଲାଗିଲା ତା'ର ଜୀବନ ସ୍ରୋତରେ ତାର ସେହି ସରଳ ମନଟିକୁ !

---

# ପଞ୍ଚମ ପରିଚ୍ଛେଦ

ବିପିନଙ୍କ ମତରେ ପୁରୀ ସହରର ପାରିପାର୍ଶ୍ୱିକ ଅବସ୍ଥା ଅଧ୍ୟୟନ ପକ୍ଷରେ ନିତାନ୍ତ ପ୍ରତିକୂଳ । କାରଣ ସେ କହନ୍ତି, ବାର ମାସରେ ତେର ଯାତ୍ରା । ଧର୍ମ ଲିପ୍ସୁ ଯାତ୍ରୀମାନଙ୍କର ବହୁଳ ସମାଗମ ହୁଏ ଏଠାରେ । ଅଜ ଧନଲିପ୍ସୁ ପଣ୍ଡାପଡ଼ିଆରିମାନେ ଯେପରି ଭାବରେ ଯାତ୍ରୀ ବ୍ୟବସାୟର ମୌରସି ସ୍ୱତ୍ୱରୁ ବଞ୍ଚିତ ନ ହେବା ପାଇଁ ନାନା ଅସତ୍‌ମାର୍ଗ ଅନୁସରଣ କରନ୍ତି, ତାହା ଦ୍ୱାରା ସହରବାସୀ ଜନ ସାଧାରଣଙ୍କର ଶାନ୍ତି ଶୃଙ୍ଖଳାରେ ବହୁ ବାଧାବିଘ୍ନ ଘଟିଥାଏ । ଏପରି କି ବାସିନ୍ଦାମାନେ ନିଜର ମାନସମ୍ଭ୍ରମକୁ ବଜାଏ ରଖିବା ପାଇଁ, ବାଟ ଘାଟ, ଏପରି ଦେଉଳ, ବଜାର ଦୋକାନ ସବୁଠାରେ ଯାତ୍ରୀ ବ୍ୟବସାୟ ସମ୍ପୃକ୍ତ କେତେକ ଗୁଣ୍ଡା ଦଲାଲମାନଙ୍କର ଯାବତୀୟ ଅଶ୍ଳୀଳ ଭାଷା

ବ୍ୟବହାର ପ୍ରଭାବରୁ ନିଜ ନିଜକୁ ଏବଂ ସେମାନଙ୍କର ପିଲାପିଲିଙ୍କୁ ରକ୍ଷା କରିବାକୁ ବହୁ ଚେଷ୍ଟା କରି ଆସୁଥିବା ସତ୍ତ୍ୱେ, ଅଧିକାଂଶ ବାଳକ ବାଳିକାଗଣ ସେଥିରୁ ମୁକ୍ତ ପାଇ ପାରୁ ନାହାନ୍ତି । ବହୁ ସ୍ଥଳରେ ଉଚ୍ଚ ଶିକ୍ଷିତ ମାନ୍ୟଗଣ୍ୟ ଲୋକଙ୍କ ଭାଷା ମଧ୍ୟ ସେହି ଅଶ୍ଳୀଳତା ଦୋଷ ଦ୍ୱାରା ସଂକ୍ରାମିତ ହେଉଥିବାର ଦେଖାଯାଏ ।

ମୋହିନୀ କିନ୍ତୁ ଏ ଯୁକ୍ତିକୁ ପସନ୍ଦ କରନ୍ତି ନାହିଁ । ସେ କହିଲେ, "ମନ ଚଙ୍ଗା ତ କାଠରେ ଗଙ୍ଗା ।" ଯୁକ୍ତି ଛଳରେ ସେ ଏପରି ପ୍ରବଚନଟିଏ ଆଉଡ଼େଇ ଦେଉଥିଲେ ସତ; ମାତ୍ର ତାଙ୍କର ଇଚ୍ଛା, ପୁରୀ କଲେଜରେ ନାମ ଲେଖାଇବାକୁ । ଅବଶ୍ୟ ପୁରୀ ପ୍ରତି ତାଙ୍କର ଆଜି କାଲି ମନ ଆକୃଷ୍ଟ ହେବାର ଆଉ ଗୋଟିଏ କାରଣ ଅନୁମେୟ ଜଣା ପଡ଼େ ! ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗରେ ଗୋଟାଏ ଅପୂର୍ବ ଦୀପ୍ତିର ଚମକ, ନବ ଉର୍ମିର ବଳିଷ୍ଠ ପ୍ରକାଶ, ପ୍ରେମବିହ୍ୱଳର ନେତ୍ର ଦୃଷ୍ଟି ଓ ବିମ୍ବାଧରରେ ସ୍ମିତ ହାସ୍ୟଛଟା ନିମନ୍ତେ ଆଶ୍ରୟ ଲାଭ କରିବାର କାରଣ କଣ ?

ଏ ପ୍ରଶ୍ନର ସଠିକ ଉତ୍ତର ମନସ୍ତତ୍ତ୍ୱବିତ୍ ଦେଇପାରନ୍ତି । ତଥାପି ଆମ୍ଭେମାନେ କ୍ଷୁଦ୍ର ବୁଦ୍ଧି ଦ୍ୱାରା ସୂଚିତ ହୋଇ କହୁଁ—ଯୌବନ ହୋଇଛି ତାଙ୍କର ସାଥୀ, ଆଉ ପ୍ରାପ୍ତ ଯୌବନରେ ସେ ଅନୁସନ୍ଧାନ କରନ୍ତି ମଧ୍ୟ ଏକ ସାଥୀ । ଉନ୍ମୁଖ-ଯୌବନା ପ୍ରେମଲତାର ରୂପଗୁଣରେ ସେ ଯେ ଅନ୍ୟାନ୍ୟଙ୍କ ପରି କେବଳ ମୁଗ୍ଧ ତାହା ନୁହେଁ, ତାଙ୍କର ଅନ୍ତରଟା ତାହାଁକୁ ବରଣ କରିବାକୁ ଚାହେଁ ଜାତି, ସମାଜ ଓ ଦେଶ ସହିତ ।

ବିପିନ ଓ ମୋହିନୀ ପୁରୀ କଲେଜର ଫାଷ୍ଟ ଇଅର ଆର୍ଟସ୍‌ରେ ନାମ ଲେଖାଇ ସାରିଛନ୍ତି । ପ୍ରେମଲତା ମଧ୍ୟ ଜିଲ୍ଲା ସ୍କୁଲରେ ଆଗରୁ ସେହିପରି ପଢ଼ି ଆସୁଅଛନ୍ତି । ସେମାନଙ୍କ ମଧ୍ୟରେ କେତେବେଳେ ପ୍ରେମଲତାର ପଢ଼ା ଘରେ ବା କେତେବେଳେ ବୁଲିଚାଲି କରୁଥିବା

ସମୟରେ ସାହିତ୍ୟ, ସମାଜ ଓ ସଙ୍ଗୀତ ବିଷୟରେ ନାନା କଥା ଆଲୋଚନା ହୁଏ । କେବେ କେବେ ମୋହିନୀ ପ୍ରେମଲତାଙ୍କୁ ଗୃହ ପାଠରେ ସାହାଯ୍ୟ କରନ୍ତି । ତେବେ ସେ ରସମୟୀ କବିତା ଓ କାବ୍ୟ ବୁଝାଇବାକୁ ବେଶୀ ଭଲ ପାଉଥିଲେ । ପ୍ରେମଲତା ମଧ୍ୟ ତାଙ୍କର ବୁଝାଇବା ପ୍ରଣାଳୀରେ ଖୁସି ସନ୍ତୁଷ୍ଟ ହୋଇ ବାପ ମା'ଙ୍କ ଆଗରେ ମୋହିନୀ ନନାଙ୍କୁ ଅତିଶୟ ପ୍ରଶଂସା କରନ୍ତି । ଦୁହେଁ ଯେତେବେଳେ କୌଣସି କଥୋପକଥନରେ ଲାଗିଥିବେ, ଯେ କେହି ଅନୁମାନ କରି ନେବ, ଏ ଦୁହିଁଙ୍କ ଅନ୍ତରରେ ଫରକ ନାହିଁ । ଏକ ଅନ୍ୟକୁ ତାହାର ସମସ୍ତ ହୃଦୟର ଭାବ ରାଶି ଅଯାଚିତ ଭାବରେ ଅଜାଡ଼ି ଦେବାକୁ ଚାହେଁ । ଶ୍ରୋତା ମଧ୍ୟ ବକ୍ତାଠାରୁ ସେହି ଅମୃତକଳ୍ପ ଭାବବହୁଳ ବଚନଧାରାକୁ ସ୍ୱୀୟ କର୍ଣ୍ଣକୁହରରେ ଢାଳି ଦେବାକୁ ଉଦ୍‌ଗ୍ରୀବ ହୋଇ ରହିଥାଏ । କିନ୍ତୁ ସେମାନଙ୍କର ତତ୍କାଳୀନ ବଦନ ମଣ୍ଡଳର ସ୍ମିତ ହାସ୍ୟ ରେଖାରୁ ଏବଂ ପୁଲକାଶ୍ରୁ ସିକ୍ତ ଯୁଗଳ-ଚକ୍ଷୁ ଉଦ୍‌ଭୂତ ବୈଦ୍ୟୁତିକ ପ୍ରେମ-ସ୍ରୋତଦ୍ୱୟର ମଧୁର ମିଳନରୁ, ସେପରି ପ୍ରେମ କଳା-କୌଶଳୀ ନ ହୋଇଥିଲେ କେହି ମର୍ମ ବୁଝି ପାରିବେ ନାହିଁ । ଅଧ୍ୟାପନା କାର୍ଯ୍ୟରେ ରତ ଥିଲାବେଳେ ମୋହିନୀ ମୋହନ ଛାତ୍ରୀର କୌଣସି ଦୋଷାଦୋଷ ସୁଧାରିବାକୁ ଯା'ନ୍ତେ ପ୍ରେମଲତାଙ୍କର ଗୋଲାପୀ ଗଣ୍ଡରେ ତାଙ୍କର ଈଷତ୍ କଠିନ ହସ୍ତ-ସ୍ପର୍ଶଜନିତ ଦଣ୍ଡଦାନ ସବିନୟ ଗ୍ରହଣଯୋଗ୍ୟ ହେଉଥିବାର ପ୍ରମାଣ ତାଙ୍କର କହିଁ ଅବନତ ମସ୍ତକ ଓ ପ୍ରସ୍ଫୁଟିତ ପଦ୍ମ-ମୁଖାଧର ନିଃସୃତ ଶୁଭ୍ର ହାସ୍ୟ ଛଟାରୁ ପାଇଥାନ୍ତି ।

କଥାରେ କହନ୍ତି, "ମାଡ଼ ଠାଏ ବାଜଏ, କିନ୍ତୁ କଥା ସହସ୍ର ଠା ବାଜଏ ।" ମୋହିନୀ ଏହି ମନୋବିଜ୍ଞାନ ସମ୍ମତ ପ୍ରହେଳିକାଟି ହୃଦୟଙ୍ଗମ କରି ପ୍ରେମଲତାଙ୍କୁ କେବେ କୌଣସି କଟୁ କଥା କହିଥିବାର ଶୁଣାଯାଇ ନାହିଁ । ବରଂ କୌଣସି କାରଣରୁ ପ୍ରେମଲତାର ମନ ମରି ଯାଇଥିଲେ, ତାଙ୍କୁ ନାନାପ୍ରକାର ଥଟ୍ଟାଳି କଥା କହି ମନ ବହଲେଇ ନିଅନ୍ତି । ଫଲ୍‌ଗୁନଦୀର ଅନ୍ତଃସ୍ରୋତ ପରି ଦୁହିଙ୍କ

ଅନ୍ତରର ଅନାବିଳ ପ୍ରେମସ୍ରୋତ ବୋଧହୁଏ, ଅଲକ୍ଷିତଭାବରେ କୌଣସି ମିଳନ ସାଗରାଭିମୁଖେ ପ୍ରବାହିତ ।

× × × ×

"ଡବ୍ ଡବ୍ ଡବ୍ ଡବ୍ ଡବ୍—ଡବ୍ ଡବ୍ ଡବ୍—ଡବ୍ ଡବ୍—ଡବ୍, ସବୁ କେହି ଶୁଣ । ଆଜି ସନ୍ଧ୍ୟା ସାତଘଣ୍ଟା ସମୟରେ ସିଂହଦ୍ୱାର ଠାରେ ଉତ୍କଳମଣି ଗୋପବନ୍ଧୁଙ୍କର ପ୍ରତିମୂର୍ତ୍ତି ତଳେ ଏକ ବିରାଟସଭା ପୁରୀ ସମାଜ-ସେବକ-ସଙ୍ଘ ତରଫରୁ ଡକା ହୋଇଅଛି । ଏ ସଭାରେ ଉତ୍କଳର ଖ୍ୟାତନାମା ଦେଶପ୍ରାଣ ଶ୍ରୀ ଶଙ୍କର ଦାଶଙ୍କ ସଭା-ପତିତ୍ୱରେ କେତେକ ସମାଜ-ସଂସ୍କାର ବିଷୟ ଆଲୋଚିତ ହେବ । ଅହୁରି ମଧ୍ୟ ସମାଜପ୍ରାଣ ଉଦୀୟମାନ ଛାତ୍ରନେତା ଶ୍ରୀମାନ୍ ମୋହିନୀ ମୋହନ ମିଶ୍ର ଉଲ୍ଲିଖିତ ଆଲୋଚନାରେ ବିଶେଷ ଭାଗ ନେବେ । ଡବ୍ ଡବ୍ ଡିବ୍—ଡିବ୍ ଡିବ୍—ଡିବ୍ ।" ଏହା କହି ଘୋଷଣାକାରୀ ଧେଣ୍ଡୁରା ପିଟି ଚାଲିଗଲା ।

ପ୍ରେମଲତା ଉପର ମହଲରେ ତାଙ୍କର ପଠନ ଗୃହରୁ ବାହାପଟ ଧରି ଚାହାଁଥିଲେ । ତାଙ୍କର କାନରେ ସେହି ନାଗରାଧ୍ୱନି ବାଜିବାରୁ ସେ ଫେରିକରି ଝରକା ନିକଟରେ କାନେଇଲେ । "ମୋହିନୀ ମୋହନ ମିଶ୍ର ସିଂହଦ୍ୱାର ବିରାଟ ସଭାରେ ବକ୍ତୃତା ଦେବେ ।"—ଏହି କେତେ-ପଦ କେବଳ ତାଙ୍କ ମନରେ ଲାଗି ରହିଲା । ତାଙ୍କର ଆପାଦମସ୍ତକ ମୃଗତୃଷ୍ଣାର ତରଙ୍ଗବତ୍ ଗୋଟିଏ ଅପୂର୍ବ ପୁଲକରେ ଖେଳିଗଲା । ଭାବିଲେ, ଯେ କୌଣସିମତେ ସେ ଆଜି ସଭାସ୍ଥଳରେ ତାଙ୍କ ହୃଦୟର ଗୁପ୍ତ ଛବିର ସ୍ୱରୂପ-ପ୍ରକାଶ ଦର୍ଶନକରି କୃତକୃତ୍ୟ ହେବେ । ମୋହିନୀ ଓ କପିଳ କଲେଜରୁ ଫେରି ଗୃହର ଦ୍ୱାର ଦେଶରେ ପହଞ୍ଚିବାରୁ ପ୍ରେମ-ଲତା ଯାଇ ହାବୁଡ଼ି ଗଲେ । କିନ୍ତୁ ବାହାର ଲୋକ ଶୁଣି ପାରିବା ଭଳି କୌଣସି କଥାବାର୍ତ୍ତା ନ ହୋଇଥିଲେ ମଧ୍ୟ ଜଣେ ନିରପେକ୍ଷ ପର୍ଯ୍ୟ-ବେକ୍ଷକ ନିଶ୍ଚୟ ବାରିନେବ, ମୋହିନୀ ଓ ପ୍ରେମଲତାଙ୍କର ପରସ୍ପର ପ୍ରତି ନିକ୍ଷିପ୍ତ ଦୃଷ୍ଟିଭଙ୍ଗୀରେ ଗୋଟିଏ ଅଜ୍ଞ ବେତାର-ବାର୍ତ୍ତା ବାହିତ ହେବାର ।

ଗୋପବନ୍ଧୁଙ୍କର ପ୍ରତିମୂର୍ତ୍ତି ସମ୍ମୁଖରେ ଲାଉଡ୍ ସ୍ପିକର୍ ଖଞ୍ଜା ହୋଇଛି । ବନ୍ଦ ହୋଇଥିବା ଘର ଓ ବେରପାଲ ଉପରେ ବସିଥିବା ସ୍ତ୍ରୀ, ପୁରୁଷ, ବାଳକ ବାଳିକାଙ୍କ ସମେତ ଗୋଲାକାର ଭାବରେ ଠିଆ ହୋଇଥିବା ଲୋକଙ୍କର ସଂଖ୍ୟା ପ୍ରାୟ ଦୁଇ ତିନି ହଜାରରୁ କମ୍ ନୁହେଁ । ପୂଜ୍ୟ ସଭାପତି ମହାଶୟ ସଭାମଞ୍ଚରେ ଆରୋହଣ କରିବା ମାତ୍ରେ ତାଙ୍କ ବେକରେ ଗୋଟିଏ ଫୁଲମାଳ ଲମ୍ବାଇ ଦିଆଗଲା ଓ ସଭାପତି କାର୍ଯ୍ୟ ଆରମ୍ଭ କଲେ । କାର୍ଯ୍ୟକ୍ରମ ମୁତାବକ ହିନ୍ଦୁ ସମାଜରେ ପ୍ରଚଳିତ କେତେକ କୁସଂସ୍କାରର ପ୍ରତିକାର ସମ୍ବନ୍ଧରେ କହିବାକୁ ଛନ୍ଦବକ୍ରା ମୋହିନୀ ବାବୁଙ୍କୁ ସଭାପତି ନିର୍ଦ୍ଦେଶ ଦେବାରୁ ସେ ତାଙ୍କର ବକ୍ତୃତା ଆରମ୍ଭ କଲେ:—

"ମାନନୀୟ ସଭାପତି ମହୋଦୟ, ମା, ଭଉଣୀ ଓ ଭାଇମାନେ— ଏ ସଭାରେ ବହୁଗୁଣୀ, ଜ୍ଞାନୀ ଓ ଧର୍ମ-ଉପଦେଷ୍ଟା ଥିବାରୁ ମୋ ପରି ଜଣେ ଅନଭିଜ୍ଞ ସମାଜ-ସଂସ୍କାର ପକ୍ଷେ ବିରାଟ ସମସ୍ୟା ଆଲୋଚନା କରିବା ଧୃଷ୍ଟତା ବୋଧ ହୋଇପାରେ । ମାତ୍ର ମୋର ସ୍ୱାଧୀନ ଚିନ୍ତା ନିର୍ଭୀକ ଭାବରେ ବିପ୍ଳବ କରିବାକୁ ସର୍ବଦା ପ୍ରସ୍ତୁତ । ପ୍ରଥମତଃ—ମୁଁ କହିବାକୁ ଚାହେଁ, ସନାତନ ଧର୍ମର ଶ୍ରେଷ୍ଠ ପୀଠ ପୁରୀଧାମ, ତାର ବକ୍ଷରେ ଶ୍ରୀ ମନ୍ଦିର ପରି ବୃହତ୍ତମ କୀର୍ତ୍ତି ଧାରଣ କରି ଜଗନ୍ନାଥଙ୍କର ମହିମା ପ୍ରଚାର କରେ— ଏଥିରେ କୌଣସି ମତ ଦ୍ୱୈଧ ରହି ନ ପାରେ । ହିନ୍ଦୁ ଜଗତର ଆବାଳ-ବୃଦ୍ଧ-ବନିତା ଶୁଦ୍ଧପୂତ-ଭାବରେ ପ୍ରତିଦିନ ସହସ୍ର ସହସ୍ର ସଂଖ୍ୟାରେ ଏଠାକୁ ଆସି ଶ୍ରୀ ଜୀଉଙ୍କର ଦର୍ଶନ ଲାଭକରି ଶ୍ରୀ ମନ୍ଦିରର ଗାତ୍ରସ୍ଥିତ ବିଭତ୍ସ, ନଗ୍ନ ଓ କାମୋଦ୍ଦୀପକ ମୂର୍ତ୍ତିମାନ ଦେଖି ଧର୍ମଭାବ ପରିବର୍ତ୍ତେ ଜଘନ୍ୟ କାମଭାବ ଘେନି ଫେରିଯିବା କଣ ଅସ୍ୱାଭାବିକ ନୁହେଁ । ଦ୍ୱିତୀୟତଃ—ଶରୀରର ସ୍ୱାସ୍ଥ୍ୟରକ୍ଷା, ଧର୍ମର ମୌଳିକ ନୀତି ବୋଲି କହିଲେ ବୋଧହୁଏ କେହି ଆପତ୍ତି ଉଠାଇବେ ନାହିଁ । ଶ୍ରୀଅଙ୍ଗ ଧୌତ ଚନ୍ଦନ ତୁଳସୀ କର୍ପୂର-ମିଶ୍ରିତ ଜଳ ପାଦୁକ ନାମରେ ଅଭିହିତ ହେଉଅଛି । ଆଉ ମଧ୍ୟ ସଦ୍ୟ ସ୍ନାତ ଦର୍ଶକର ଶୂନ୍ୟ ଉଦର ପ୍ରତି ଯେ ତାହା ସ୍ୱାସ୍ଥ୍ୟପ୍ରଦ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଉକ୍ତ ପାଦୁକ

ଳଳ ବସ୍ତୁ ଦବସ ଧଣ ଗୋଟିଏ କୁଣ୍ଡରେ ଅବଦ୍ଧ ରହି ପର୍ଯ୍ୟୁଷିତ ଅବସ୍ଥାରେ ଦାର୍ଶନର ନେତେଦୂର ସେବ୍ୟ, ଧାରଣା କହିହୁଏ ନାହିଁ । ତୃତୀୟତଃ—ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରଥରେ ଗୁଣ୍ଡିଚ୍ଚ ବାଜେ ଚଲବେଳେ ତାହାଙ୍କ ରଥ ଦଉଡ଼ି ଟାଣିବାକୁ ଭକ୍ତମାନଙ୍କର ଭକ୍ତ ଉତ୍ସାହ ଜାଗ୍ରତ କରାଇବା ପରିବର୍ତ୍ତେ ନାନା ଅଶ୍ଳୀଳ ଭାଷାରେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଯେଉଁ ଗାଳି ଗୁଲଜ କରି ଜାତୀୟ ଚରିତ୍ରକୁ କଳଙ୍କିତ କରେ, ତାହା କେତେଦୂର ସଭ୍ୟତାର ପରିଚୟକ ନୀତିବାଦୀମାନଙ୍କର ଯୁକ୍ତିର ବିଷୟ ହେବା ଉଚିତ । ଚତୁର୍ଥତଃ—ସ୍ତ୍ରୀ ବହୁପତିକ ହେଲେ ଯେପରି ସମାଜରେ କୁଟଣୀ ବୋଲି ଲଞ୍ଛିତା ହୁଏ, ପୁରୁଷ ସେହିପରି ବହୁପତ୍ନୀକ ହେଲେ ସମାଜ କାହିଁକି ପକ୍ଷପାତ ବିଚ୍ଚର କରି ତାହାର ଦଣ୍ଡ ବିଧାନ ନ କରେ ? ପଞ୍ଚମତଃ—ସମାଜର କେତେକ ଶ୍ରେଣୀରେ ମାତୃତୁଲ୍ୟା ଜ୍ୟେଷ୍ଠଭ୍ରାତାର ବିଧବା ପତ୍ନୀକୁ କନିଷ୍ଠ ଭ୍ରାତା ଦ୍ୱିତୀୟ ବିବାହ କରିବାର ପ୍ରଥା ପ୍ରଚଳିତ ଥିବାର ଦେଖାଯାଏ । ହିନ୍ଦୁର ଆଦର୍ଶ ପୁରୁଷ ରାମଚନ୍ଦ୍ରଙ୍କ ପତ୍ନୀ ସୀତାଦେବୀଙ୍କୁ ମାତା ସମ ଜ୍ଞାନ କରି ବନବାସ ଅବସ୍ଥାରେ ଚତୁର୍ଦ୍ଦଶ ବର୍ଷ କାଳ ତାଙ୍କର ମୁଖକୁ ଅନାଇବାକୁ ଲକ୍ଷ୍ମଣ ସାହାସ ନ କରି, କେବଳ ପାଦପଦ୍ମରେ ଧ୍ୟାନ ରଖିଥିଲେ । ତେବେ ସେହି ହିନ୍ଦୁ ଆଦର୍ଶାବଲମ୍ବୀମାନେ ମାତୃକଳ୍ପା ଜ୍ୟେଷ୍ଠ ସହୋଦରର ସ୍ତ୍ରୀକୁ ସ୍ୱପତ୍ନୀ ରୂପେ ଗ୍ରହଣ କରିବା କେତେଦୂର ଯୁକ୍ତି ସଙ୍ଗତ ? ଷଷ୍ଠତଃ—ଅଖାଦ୍ୟ ଓ ଅକରଣୀୟ କାର୍ଯ୍ୟର ଦୁଆ ଦେଇ ମାନବ ସମାଜର ସର୍ବଶ୍ରେଷ୍ଠ ପରିଶ୍ରମୀ ଶ୍ରେଣୀର ଲୋକମାନଙ୍କୁ ସାମାଜିକ, ଅର୍ଥନୈତିକ, ଧର୍ମମୂଳକ ଓ ରାଜନୈତିକ ସମାଧିକାର ନ ଦେବା ଜଗତ୍‌ପିତାଙ୍କର ବିରୋଧୀ କାର୍ଯ୍ୟ ନୁହେଁ କି ? ସପ୍ତମତଃ—ସତ୍ୟାହିଂସାବତାର ଭଗବାନ ବୁଦ୍ଧଦେବଙ୍କର ଜନ୍ମ ସ୍ଥାନ ଆମର ଏହି ଭାରତରେ ହେଲେ ମଧ୍ୟ ଓ ସେହି ମହାପୁରୁଷଙ୍କର ମୌଳିକ ନୀତି ଆମ୍ଭେମାନେ ମର୍ମେ ମର୍ମେ ଗ୍ରହଣ କରୁଥିଲେ ମଧ୍ୟ ଓ ଭାରତୀୟ ଜନବାସୁର ସମ୍ପୂର୍ଣ୍ଣ ଅନୁପଯୋଗୀ ଖାଦ୍ୟ ମତ୍ସ୍ୟମାଂସ ଦ୍ୱାରା ବହୁ-

ଦିନର ଫିଷ୍ଟ କଠିନ ରୋଗର ନିଦାନ ସୁନିର୍ଣ୍ଣୀତ ହୋଇ ଯାଇଥିଲେ ମଧ୍ୟ, ପ୍ରତିଦିନ, ପ୍ରତିଘଣ୍ଟା, ପ୍ରତି ମୂହୂର୍ତ୍ତରେ ଲକ୍ଷ ଲକ୍ଷ ପ୍ରାଣୀ ବିନାଶ କରି ଆମ୍ଭେମାନେ କେତେଦୂର ଦୀର୍ଘଜୀବୀ ହୋଇପାରିଛେ ଏବଂ ପୃଥିବୀ ପୃଷ୍ଠରୁ ହିଂସାନଳକୁ ନିର୍ବାପିତ କରି କେଉଁ ସାହସରେ ଶାନ୍ତିର ବଡ଼ପଣ୍ଡା ବୋଲାଇବାକୁ ଯାଉଛେ ? ମୁଁ ଆଜିକାର ଆଲୋଚନା ପାଇଁ ଏହି ସାତଗୋଟି ବିଷୟ ପ୍ରସ୍ତାବ କଲି ଏବଂ ଏ ଗୁଡ଼ିକର ପୂର୍ଣ୍ଣ ମାତ୍ରାରେ ସଂସ୍କାର ହେବା ବିଧେୟ ବୋଲି ମୁଁ ମନେ କରେ । ଅନ୍ୟ କେତେକ ବକ୍ତା ପ୍ରସ୍ତାବଗୁଡ଼ିକର ସପକ୍ଷ ଓ ବିପକ୍ଷରେ ଆଲୋଚନା କରିବା ପରେ ସଭାପତି ମହାଶୟ ତାଙ୍କର ଦୀର୍ଘ ଭାଷଣରେ ତୁଳସୀ ରାମାୟଣ, ଗୀତା, ମାଦଳାପାଞ୍ଜି ଓ ଶିଳ୍ପଶାସ୍ତ୍ରମାନଙ୍କରୁ କେତେକ ନଜିର ଦେଇ ବଡ଼ ହୃଦୟସ୍ପର୍ଶୀ ଅଭିଭାଷଣ ଦେଲେ । ଶେଷରେ ମତ ସଂଗ୍ରହ କରିବା ପାଇଁ ଶ୍ରୋତାମାନଙ୍କୁ ହସ୍ତ ଉତ୍ତୋଳନ କରିବାକୁ ନିର୍ଦ୍ଦେଶ ଦିଅନ୍ତେ, ପ୍ରସ୍ତାବମାନଙ୍କ ସପକ୍ଷରେ ଅଧିକାଂଶ ମତ ପ୍ରଦାନ କରିଥିଲେ । ଯାହାହେଉ ସଭାଟି ସୁରୁଖୁରୁରେ ସାଙ୍ଗ ହେଲା ଶୁଣି ଆପଣମାନେ ଖୁସି ହେବେ । ସେଦିନ ଏହି ସବୁ ବିଷୟ ନେଇ ଘରେ, ବାହାରେ, ମଠବାଡ଼ି, ଦୋକାନ, ବଜାର ସବୁଠାରେ ଆଲୋଚିତ ହେବାକୁ ଲାଗିଲା । ବିବେକାନନ୍ଦ ବାବୁଙ୍କ ଖାସ କାମରାରେ ମଧ୍ୟ ମୋହିନୀ ବାବୁ, ବିପିନ ବାବୁ, ପ୍ରେମଲତା ଓ ଅନ୍ୟ କେତେଜଣ ଡାକ୍ତର ବାବୁଙ୍କ ସଭାପତିତ୍ୱରେ ଗୋଟିଏ ଛୋଟକାଟ ଧରଣର Mock meeting ବା ନକଲ ସଭା କରି ଏ ଦିଗରେ କାର୍ଯ୍ୟ ଆରମ୍ଭ କରିବାକୁ ସ୍ଥିର କଲେ । ପ୍ରେମଲତା ମୋହିନୀ ବାବୁଙ୍କର ମୌଳିକତା ଓ ସ୍ୱାଧୀନ ଚିନ୍ତାଧାରାର ପ୍ରତ୍ୟକ୍ଷ ପ୍ରମାଣ ପାଇ ତାହାର ପ୍ରେମାନୁସାରର ସଚ୍ଚୋଟ ସାଥୀ ଲାଭ କରି ପାରିବ ବୋଲି ମନେ ମନେ ଗର୍ବ ଅନୁଭବ କଲା । ସେହିଦିନ ଠାରୁ ସେ ତା ପ୍ରତି ବେଶୀ ବେଶୀ ଆକୃଷ୍ଟ ହୋଇ ତାଙ୍କର ସୁଖ ଦୁଃଖରେ ଭାଗୀ ହେବାକୁ ଲାଗିଲା ।

ଜଗନ୍ନାଥଙ୍କର ନବକଳେବର ବର୍ଷ ଯେଉଁ ଭୀଷଣ ମହାମାରୀ ହୋଇଥିଲା, ସେଥିରେ ଲୋକ ଏକଦମ୍ ସୁପ ଶୋଇଗଲେ । ସୁବିଧାରେ

କୋକୁଆ ଭୟ ହୋଇଗଲା । ମୋହିନୀବାବୁ ଓ କପିଳବାବୁ ବି. ଏ. ପରୀକ୍ଷା ଦେଉଥାନ୍ତି । ପ୍ରେମଲତାର ମଧ୍ୟ ମ୍ୟାଟ୍ରିକୁଲେସନ୍ ପରୀକ୍ଷା ସରିଥାଏ । ଲୋକସେବା ସଙ୍ଘର ଜଣେ ବିଶିଷ୍ଟ କର୍ମୀ ହିସାବରେ ମୋହିନୀ ବାବୁଙ୍କର ମଧ୍ୟ ଖ୍ୟାତି ଥିବାରୁ ତାହା ଯେପରି ଖଣ୍ଡନ ନ ହୁଏ, ସେଥିପାଇଁ ପରୀକ୍ଷା ଚାଲିଥିବା ଅବସ୍ଥାରେ ସୁଦ୍ଧା ସେ ଗ୍ରତାସ୍ୱତ ଜଲସ ରୋଗୀଙ୍କର ସେବା ଶୁଶ୍ରୂଷାରେ ଲାଗିଥାନ୍ତି, ନାକ ପୋଛିବାକୁ ତିଳେମାତ୍ର ଫୁରୁସତ ନ ଥାଏ ।

କଳକତାର ପରି, ସୁଧର୍ମ ଗାଈର ବାଛୁରି ମରିବ ତ ନାହିଁ, ଆଉ କାହାର ମରିବ ? ପରୀକ୍ଷା ସରିବାର ଅବ୍ୟବହିତ ପରେ ମୋହିନୀବାବୁ ମଧ୍ୟ ହେଲେ କଲେରାରେ ଆକ୍ରାନ୍ତ ! କି ଦୈବୀଚକ୍ର ପଡ଼ିଲା ପ୍ରେମଲତା ମୁଣ୍ଡରେ ! ନିଜେ ଡାକ୍ତରବାବୁ ସ୍ୟାଲାଇନ୍ ଭିଟାମିନ ଓ ଇଞ୍ଜେକ୍ସନ ଆଦି କେତେ ଦେଇ ସାରିଲେଣି । ତଥାପି ମଳୁର ମଳ ଓ ପରିସ୍ରାରେ କିଛି ପରିବର୍ତ୍ତନ ଆସିଲା ନାହିଁ । ଗାଁରୁ ରାମସ୍ୱାମ ମିଶ୍ରେ ଓ ସୁଲକ୍ଷଣା ଦେବୀ ପୁଅର ଚେତାଚୈତନ୍ୟ ଶିନାଦନ ହେଲା ନାହିଁ ବୋଲି ଶୁଣି କାନ୍ଦି ବୋବାଇ ପଳାଇ ଆସିଥିଲେ । ଶହଶହ ଟଙ୍କା ଖର୍ଚ୍ଚ ହେଲାଣି । ସିଭିଲସର୍ଜନ ସୁରେନ୍ ଆଚାର୍ଯ୍ୟ ସମସ୍ତଙ୍କୁ ଅଭୟ ଆଶ୍ୱାସ ଦେଉଛନ୍ତି ସତ, ମାତ୍ର ଗର୍ଭଧାରିଣୀ ମା'ର ମନ ସମ୍ଭାଳେ କେତେବେଳେ ? ଡାକ୍ତର ବାବୁଙ୍କ ପରିବାରର ସମସ୍ତେ ପାଳି କରି ଜାଗଣିଆର । ପ୍ରେମଲତା କିନ୍ତୁ ସମସ୍ତଙ୍କ ଅନୁରୋଧ ସତ୍ତ୍ୱେ କହୁଥାନ୍ତି, "ମୁଁ କ'ଣ କରିବି, ମୋର ଆଖିକୁ ତ ନିଦ ଆସୁ ନାହିଁ । ତୁମେମାନେ ଶୁଅ, ମୁଁ ଘଣ୍ଟା ଦେଖି ଔଷଧ ଦେବି ।" ପାଦ ପାଖରେ ବସି କେତେ-ବେଳେ ସେ ମାଲିସ ଦେଉଥାନ୍ତି ପାଦ । କେତେବେଳେ ତାଙ୍କର ଅର୍ଦ୍ଧନେତ୍ର ପଲକ ନ ପକାଇ ଲକ୍ଷି ରହିଥାଏ ରୋଗୀର କପାଳ ଉପରେ । ମା ସୁଲକ୍ଷଣା ଦେବୀ ବରଂ ଢୁଲେଇ ପଡ଼ୁଥାନ୍ତି କାନ୍ଥକୁ ଆଉଜି । କିନ୍ତୁ ପ୍ରେମଲତା ଦିନସାରା ଚବିଶ ଘଣ୍ଟାରୁ ଖାଇବା ପିଇବା ପାଇଁ ଯାହା କେବଳ ଅବସର ପାନ୍ତି ସେତିକି । ବାନ୍ତି, ମଳମୂତ୍ର ପରିଷ୍କାର

ଅବଧାରେ ସେ ଜାଣିବୁ ଏ କ୍ଷେତ୍ରରେ ନାରୀର ସ୍ଥାନ ଦଉଡ଼ି ନାହିଁ । ସବୁ ସେ ଚଳନ କରି ସରିଲେଣି । ଜାଣ, କାହିଁକି ? ଭାର୍ଯ୍ୟା ବିନା ଗୃହ ଅସମ୍ଭବ । ହୃଦୟ ମନ୍ଦିରର ରତ୍ନ ସିଂହାସନକୁ ସଜାଇ ରଖିଛନ୍ତି ସେ କାହା ପାଇଁ ? ଶିକ୍ଷିତା ସେ, ସେ କଣ ପଢ଼ି ନାହାନ୍ତି ସତ୍ୟବାନଙ୍କୁ ଯମ ହାତରୁ ଛଡ଼ାଇ ଆଣିଥିବା ସତୀ ସାବିତ୍ରୀଙ୍କ କଥା ? ସ୍ୱାମୀ ସେ ସ୍ତ୍ରୀର ଜୀବନ ସ୍ୱର୍ଗ—ଧର୍ମ—ଦେବତା । ସାତଦିନ ସାତ ରାତି ଇନ୍ଦ୍ର ବଜ୍ର ବୃଷ୍ଟି କରି ପରେ ସତୀ ତାଙ୍କର ଆଦେଶେ, ପୁଣି ଅହଲ୍ୟା ସତୀର ହୃଦୟ-ବ୍ୟଥା ଲଭି ପାରିଥିଲ ଷଟ୍‌ପଣ୍ଡିତଙ୍କ ସନ୍ତୁଷ୍ଟ କରି । ସେ କହେ ବାଳା ଅଟେ ଯେ ଅବଳା ! ଦ୍ରୌପଦୀ ସତୀର ବଳ କଥା ଶୁଣି,—ଯେଉଁ ନାରୀ କହିଥିଲା ମାନୀ ଦୁର୍ଯ୍ୟୋଧନ ଓ ବଳୀ ଦୁଃଶାସନର ଦର୍ପ ଚୂର୍ଣ୍ଣ ହୀୟ୍ୟ ବଚସନ ରେଖେ ? ସ୍ୱର୍ଣ୍ଣପୁର ଲଙ୍କା ରାଣୀ, ମନ୍ଦୋଦରୀର ଧର୍ମବଳ, ପରି ଛପନ ଗଣ୍ଡା ଯୁଗଳ ଅଯୁତ, କରିଥିଲ ସ୍ୱକପଣ ସେ ରାବଣ ତେତିଶ କୋଟି ଦେବତାଙ୍କ ଉପରେ । ତେବେ ପ୍ରେମଲତାଙ୍କ ପକ୍ଷେ କିମ୍ବା ଅସମ୍ଭବ ଥାଉ ଥାଉ ସେହି ନାରୀର ସର୍ବସ୍ୱ, ଭକ୍ତି ଓ ସତୀତ୍ୱ,—ତାଙ୍କର ପୂର୍ଣ୍ଣ ଅଧିକାରରେ ସାବିତ୍ରୀଙ୍କ କାନ୍ତି ଅଙ୍କ ତାଙ୍କର ସ୍ୱଚ୍ଛ ମନ-ଦର୍ପଣରେ ପ୍ରତିଫଳିତ । ବାସ୍ତବିକ ମନସ୍ୱୀମାନେ ମନର ବଳ କ୍ୱଚିତ୍ ସାଧ୍ୟ କରି ନ ପାରନ୍ତି କଣ ଜଗତରେ ! ମନସ୍ୱିତା ଓ ଆଧ୍ୟାତ୍ମିକତାର ଅନ୍ୟୋନ୍ୟ ମଧୁର ସମନ୍ୱୟ ସ୍ୱୟଂ ବ୍ରହ୍ମାଣ୍ଡପତିଙ୍କର ଆସନ ଟଳାଇବାର ଦୃଷ୍ଟାନ୍ତ ଧର୍ମ ନିର୍ବିଶେଷେ ମାନବ-ଇତିହାସରେ ବିରଳ ନୁହେଁ । ପ୍ରେମଲତାଙ୍କର ଦୁର୍ବାର ସଙ୍କଳ୍ପ, ତାଙ୍କର ଅମୂଲ୍ୟ ନିଧିକୁ କାଳ-ଚକ୍ରର ହସ୍ତରୁ ଉଦ୍ଧାର କରି ପାରିଛି । ମୋହିନୀ ବାବୁ ବର୍ତ୍ତିନ ବରୁ ଓ ପ୍ରେମଲତାଙ୍କୁ ସଙ୍ଗରେ ଧରି ସ୍ୱାସ୍ଥ୍ୟ-ପ୍ରଦ ବାୟୁ ସେବନ ପାଇଁ ବନ ବନ ସମୁଦ୍ର ତୀରରେ ଭ୍ରମଣ କରନ୍ତି । ସେ ପୂର୍ବ ସ୍ୱାସ୍ଥ୍ୟ ସମ୍ପୂର୍ଣ୍ଣ ଫେରି ପାଇ ନ ଥିଲେ ମଧ୍ୟ ଆଉ ଦୁର୍ବଳତା ଅନୁଭବ କରୁ ନାହାନ୍ତି ।

× × × ×

ହୋଇଥିରେ । ଯେଉଁ ବେଦକୁ ସମସ୍ତ ଶାସ୍ତ୍ର, ପୁରାଣ ଜନ୍ମଦାତା କହନ୍ତି, ସେହି ବେଦରେ କୌଣସି ବ୍ରହ୍ମ-ସମର୍ଥ ଶୂଦ୍ର ବ୍ୟକ୍ତି ଗୁଣ ପରମସ୍ତ ବ୍ରାହ୍ମଣ ବୋଲି ଅଭିହିତ ହେବାର ଦୃଷ୍ଟାନ୍ତ ଅଛି କି ? ବୈଦିକ ଯୁଗର ପରକାଳରେ ଜାତିଭେଦ ପ୍ରଥାର କଠୋରତା ଅବଲମ୍ବନ ସଙ୍ଗେ ସଙ୍ଗେ ବେଶଭୂଷା, ଆହାର ବିହାର, ଅସ୍ୱର ଈଶ୍ୱର ଓ ଈଶ୍ୱରେତର ସମ୍ବନ୍ଧରେ ଯେଉଁ ସାଧାରଣ ଭେଦାଭେଦ ନ ଥିଲା, ତାହା ହିଂସା ଅଭିମାନ ରୂପକ ଜୀବାଣୁ ଦ୍ୱାରା ଏ ଜାତିର ଶରୀରରେ ପ୍ରବେଶ କରି ତାହାର ମନୋବଳକୁ ସେହି ସାମ୍ୟ-ମୈତ୍ରୀକୃତ ରୂପକ ସାରତତ୍ତ୍ୱକୁ ତମ ଯନ୍ତ୍ର ଦ୍ୱାରା ନଷ୍ଟ କରି ଯେତେ-ବେଳେ ନାନା ବର୍ଣ୍ଣ ସଂଘର୍ଷ ଉପୁଜୋଇଲା, ସେତେବେଳେ ପରମାତ୍ମା ସାମ୍ୟବାଦୀ ନେତା ମହାପୁରୁଷ ବୁଦ୍ଧଦେବଙ୍କ ତାଙ୍କର ସାମ୍ୟ, ଶାନ୍ତି, ପ୍ରୀତି, ମୁକ୍ତିର ପ୍ରଚାର ପାଇଁ ଜନ୍ମ ହେଲେ ଏହି ଭାରତରେ ।

କ୍ଲାନ୍ତ-କାନ୍ତ ସୂର୍ଯ୍ୟଦେବ କାନ୍ତା ବସୁଧା-ମୁଖ ହେମଶ୍ରୀ-ତରବାଳକୁ ତାଙ୍କର ବିଦାୟକାଳୀନ ଅଧର ଚୁମ୍ବନ ଦେଇ ତାର ମୁଖରେ ଯେଉଁ ଶ୍ୱେତ ଲୋହିତ ରଙ୍ଗର ଅପୂର୍ବ ହାସ୍ୟ ସ୍ଫୁଟନ କରି ଯାଇଥିଲେ ବିଦେଶକୁ, ତାହା ଆଉ ବହୁକ୍ଷଣର ସୂଚନା ନ ଦେଇ ବରଂ ପ୍ରୋଷିତ-ଭର୍ତ୍ତାର ଅବଶ୍ୟମ୍ଭାବୀ ମଧୁରତର ମିଳନର ପୂର୍ବାଭାସ ଦେଉଥିଲା ।

ପ୍ରାଚୀ ଗଗନର କ୍ଷୀଣ ରକ୍ତିମା ଓ ଉଦୀୟମାନ ଚନ୍ଦ୍ରର ଶୀତାଂଶୁ ନୀଳ ସାଗର ଉପର ଝଲକମୟରେ ରଚନା କରିଛନ୍ତି କେତେ ମିଳନ କୁଞ୍ଜ—ଦୁଇଗୋଟି ଅବକୃତ ହୃଦୟର ବାସନା ପ୍ରକଟନ ପାଇଁ । ମୋହନୀ ଓ ପ୍ରେମଲତା ପାଦକୁ ପାଦ ମିଳାଇ ବୁଲୁଛନ୍ତି ଠିକ୍ ସମୁଦ୍ର ଧାରେ ଧାରେ । ଉଭୟଙ୍କ ଅଧର ଦେଶରେ ଲୁଚି ରହିଛି ମଧୁର ହାସ୍ୟ । ତାହା ପୁଣି ରସାୟିତ ନାନା ଭାବ ଅଣ୍ଟିତ ସ୍ୱରସ୍ୱରେ ।

ଏପଟ୍ ବାରଣ୍ଡା ଖଣ୍ଡିର ଦଶ ଫୁଟରେ ସିମେଣ୍ଟ ବେଞ୍ଚ ଆଡ଼କୁ ଅଗ୍ରସର ହୋଇ ସେମାନେ ବୋଧହୁଏ ଜ୍ୟୋସ୍ନାରେ ବସିବାକୁ ଗଲେ । ମୋହନା ବାବୁ ତାଙ୍କର ଦକ୍ଷିଣ ହସ୍ତରେ ପ୍ରେମଲତାର ବାମ କରକୁ ଟାଣିଆଣିଲେ ନିଜ ଆଡ଼କୁ । ପ୍ରେମଲତା ଅନିଚ୍ଛାକୃତ ହୋଇ ବସି ପଡ଼ିଲେ ସତ, ମାତ୍ର ଲୌହ ସ୍ପ୍ରିଙ୍ଗ ପରି ଦୂରକୁ ଛିଟିକି ଆସିବା ମୁହୂର୍ତ୍ତରେ ତାଙ୍କର ଗୋଲାପି ଗଣ୍ଡକୁ ସ୍ପର୍ଶ କଲା ହାସ୍ୟ-ରଞ୍ଜିତ ଓଷ୍ଠ ଅଧର । ଅଦ୍ଭୁତ ବେଗରେ ଆକୃଷ୍ଟ ହେଲା ସେମାନଙ୍କର ସ୍ୱର ତନ୍ତ୍ର—ସେହି ଶରତ୍‌ରଜନୀର ଶ୍ୱେତଲୋହିତ ମିଳନ-ସ୍ୱପ୍ନ ସତ । କିନ୍ତୁ ଜ୍ୟୋତ୍ସ୍ନାହତ ରଙ୍ଗିମା ଓ ଅନ୍ତର୍ହିତା ହେଲା ଦେବାକୁ ପ୍ରାୟ, ତାପୀର ମନରେ ! ମୋହନା ବାବୁଙ୍କର ମସ୍ତକରେ ଗୋଟାଏ ପ୍ରଳୟ ଝଞ୍ଜା ବହିବାକୁ ଲାଗିଲା । ପ୍ରେମଲତା ଦପ୍ କରି ଠିଆ ହୋଇଗଲେ । ତାଙ୍କର ମୁଖ ବିଷାଦ, ଘୃଣା ଓ କ୍ରୋଧରେ ବିକୃତ ଦେଖାଗଲା । ସେ ପ୍ରଶ୍ନ କଲେ, "ମୋହନା ବାବୁ, ତୁମେ କଣ ଚାହଁ ?" ସଙ୍ଗେ ସଙ୍ଗେ ଲଜ୍ଜିତ ମୁଖରୁ ଉତ୍ତର ବାହାରି ଆସିଲା, "ମୁଁ ଚାହେଁ ତୁମ ।" "ମୋର ବି ଦାନ ପ୍ରେମ ।—କିନ୍ତୁ ସେ ଦାନ ଅପାତ୍ରରେ ହୁଏ । ଯାହାର ସ୍ଥୈର୍ଯ୍ୟ ନାହିଁ, ବୀର୍ଯ୍ୟ ନାହିଁ, ମନସ୍ୱିତା ବା ଦୃଢ଼ ସଙ୍କଳ୍ପ ନାହିଁ, ସେପରି କାପୁରୁଷ ପ୍ରତି ପ୍ରେମଦାନ ଅର୍ଥହୀନ । ତୁମର ଜୀବନ-ବୀଣାକୁ କର୍ମ କ୍ଷେତ୍ରରେ ଝଙ୍କୃତ କରିବା ପାଇଁ ମୋତେ ତନ୍ତ୍ରୀ ରୂପେ ମୋର ପ୍ରଗାଢ଼ ପ୍ରୀତି ଦ୍ୱାରା ବାନ୍ଧିବାକୁ ଯତ୍ନ ଥାଏ ଆସ, ତେବେ ଅତୁଟ ପ୍ରେମର ପରୀକ୍ଷା ଦେବାକୁ ପବିତ୍ର ମାନବତା ପ୍ରୟାସୀ ମନ୍ତ୍ରଶାଣୀ ସମାଜରେ । ତୁମର ସାଧନା ବର୍ତ୍ତମାନ ସୁଦ୍ଧା ଅପୂର୍ଣ୍ଣ ରହିଛି । କ୍ଷମା କରିବ, ଯଦି ମୁଁ ଅପ୍ରିୟ ସତ୍ୟ ପ୍ରକାଶ କରି-ଥାଏ । ମୁଁ ଚାଲିଲି ତୁମଠାରୁ ଦୂର ଦୂରାନ୍ତରକୁ । ସିଦ୍ଧି ପରେ ଜୀବ ଶିବ ମିଳନ ପାଇଁ ମୁଁ ନିଜକୁ ପ୍ରସ୍ତୁତ କରିବି ମୋର ସାଧନା କ୍ଷେତ୍ରରେ ।" ଏତିକି ଆଦେଶ ବା ଉପଦେଶ ଯାହା କହ ନା କାହିଁକି, ପ୍ରେମଲତା ଏତିକି କହି ମୋହନା ବାବୁଙ୍କୁ ଆସନରୁ ଉଠାଇଲେ ଓ ଦୁହେଁ ନିର୍ବାକ୍ ହୋଇ ସ୍ୱଗୃହାଭିମୁଖେ ଚାଲିଲେ ।

—୦—

# ଷଷ୍ଠ ପରିଚ୍ଛେଦ

ତଉଧିସ୍ତ ଚନ୍ଦ୍ରଶେଖର ଦାଶ ଧନରେ କୁବେର ହେଲେ ଜଣେ ହେବ ମାସ୍ତାମା ବ୍ରାହ୍ମଣ ବୋଲି ଶାସନୀମାନେ ତାଙ୍କୁ ଗୋଷ୍ଠୀ ବା ସାମାଜିକ ଷେତ୍ର, ବିବାହ ବା ବ୍ରତ ସମ୍ପର୍କରେ ଅନୁଆଁ କରି ରଖିଥାନ୍ତି । ମାତ୍ର ଲେଖନପୁରର ସେ ଜଣେ କୋଣ ରଙ୍ଗା ବୋଲି ସମସ୍ତେ ଜାଣନ୍ତି । ଏ କଥା ପୁଅଙ୍କୁ ସେ ଗଗବ ସୁବୁଦ୍ଧା ଦେଖି ଶାସନ ବାଡରେ ଛନ୍ଦ ଦେଇ ପାରିଲେଣି । ଯେ ତାଙ୍କ ଘରେ ବନ୍ଧୁତାଏ ବାନ୍ଧିଛି, ତାର ଜରମ ଖୋଲି ଯାଇଛି ଜାଣ । କାରଣ ସେ କଥା କଥାକେ କହୁ ପକାନ୍ତି, "ଅରେ ଯା,—ଛାଡ ମୋର ବାଡପରେ, ତଳିଆ ଥିଲେ କେତେ ରଥୀ ମହାରଥୀ ଆସି ଦୁଆରେ ଜଗା ହେବେ ।"

ତାଙ୍କର ପୁଅଙ୍କ ଉଠିଛି, ଯାହା ହୋଇ ଯାଉ ନା କାହିଁକି, ରାମଚନ୍ଦ୍ରପୁରର ସାମନ୍ତ ବୋଲିଉଥିବା ରାମରାମ ମିଶ୍ରଙ୍କ ଘରେ ତାଙ୍କର କନିଷ୍ଠା କନ୍ୟା ମାଳତୀକୁ ବିବାହ ଦେବେ । ଛତ୍ରିଶ ରଥଙ୍କୁ ମଧ୍ୟସ୍ଥ କରି ପଠାଗଲା । ସେ ବା କାହିଁକି ନ ଯିବେ ଯେ ? ନ ହେଲେ ରଣପୁର ପଥା ଓ ଖଣ୍ଡେ ଠଙ୍କା ବୁଡି ଯାଉଛି । ପ୍ରକାଶରେ ଘଟସୁଟ । ଯୋଗଥିଲେ ଗଣ୍ଡ ଗଣ୍ଡ ହେବ । ସେ କେବଳ ଲମିଛି ମାତ୍ର । ଶ୍ରୀଷ୍ଟ ପ୍ରତିଷ୍ଠା କମି ଯାଉଛନ୍ତି, ସେ ନିଷ୍ଟୟ କଲେ କଲେ କୌଣସି ମିଶ୍ରଙ୍କୁ ମଙ୍ଗେଇ ଦେବେ ।

ଏଣେ ରାମଚନ୍ଦ୍ର ପୁରରେ ପହଞ୍ଚି ଲମ୍ବେ ଲମ୍ବେ ମିଶ୍ରଙ୍କ କୋଠରି ଘରେ ଆସି ପହଞ୍ଚିଲୁ ବେଳକୁ ସଞ୍ଜ ହେଉ ଯିବା ସମୟ । ମଧ୍ୟ ମହାପାତ୍ରେ ଦେଓ୍ୱାନ, ଚନ୍ଦ୍ର, କେବଳି, ଚନ୍ଦନ ଚମକ, ଖଡ଼ଗ୍ ଖଡପଥୀ, କୁଳ ପ୍ରଦୀପ ଓ ସେର ଧୂମ୍ରପାନର ଆୟୋଜନରେ ଥିଲେ । ମହାପାତ୍ରେ ଛତ୍ରିଶ ରଥଙ୍କୁ ଦେଖି ମଜସ ବାହାରକୁ ଆଡ ଡାକିଲେ, 'ଅରେ

ମଣ୍ଡପ, ମଣ୍ଡପ ରେ, ପାଣି ଆଣ ଉଥଙ୍କ ପାଇଁ । ଆରେ ଲେଖନପୁର ଲୋକେ ଆସିଛନ୍ତି, ପାନ ଆଣ' ଇତ୍ୟାଦି । ମଣ୍ଡପ ଦେଉଳାନଙ୍କ ଆଗଣା ଆଡ଼ିରେ ଧାଡ଼ି ଧୂଡ଼ ହୋଇ ପାଣି ଢ଼ାଳେ ଆଣି ଉଥଙ୍କ ପାଦ ପଖାଳ ଦେଇ ନିଜ ଗାମୁଛାରେ ପୋଛି ପୋଛାପୋଛି କରିଦେଲା । ତାପରେ ପୁଣି ଘରକୁ ଦୌଡ଼ି ଯାଇ ପାନ ଥାଳିଆରେ ଧରି ଆସିଲା । ଲୋକେ ଆସନ ଗ୍ରହଣ କରିବା ଭିତରେ ମହାପାତ୍ରଙ୍କ କାନରେ ଚୁପ୍ ଚୁପ୍ କରି ପାଞ୍ଚ ମିନିଟ୍ ଯାଏ କଣ କହିଲେ । କେବଳ ଶେଷର ପଦକ ଶୁଭିଗଲା । "ଚୌଧୁରୀ ତୁମର ଦାରିଦ୍ର୍ୟ ଛଡ଼ାଇ ଦେବେ । ତୁମଠେଇଁ ତ ସବୁ କଥା ।"

ମହାପାତ୍ରେ ମନେ ମନେ ବଡ଼ ଖୁସିଟାଏ ହୋଇ ମଣ୍ଡପ ଭାରିକ ଢାଳରେ ଯାଇଁଙ୍କ ପାଖକୁ ଖବରଟାଏ ଦେଲେ । ଗ୍ରାମ ଗ୍ରାମ ମିଶ୍ରେ ଆସି ସିଧାସୁ ଲୋକେ କଥାଟାକୁ ବୁଲେଇ ବୁଲେଇ ପକାଇଲେ । ପ୍ରଥମେ ମିଶ୍ରେ ଟିକିଏ ମୋଟା ମାଡ଼ ହେବାରୁ ଲୋକେ ସାଫ ସାଫ ଶୁଣେଇ ଦେଲେ, "ଲେଖନପୁର ଦୁଇଯୁଗରୁ ସ୍ଥିର ପଣି କରିମନ୍ତି, ଯେ ଅଙ୍କୁ ଗଞ୍ଜେ ଭଉ ସୁନା, ଠାକୁର ପାଇଁ ମଠର ସାଇକେଲ, ସୁନା ଘଣ୍ଟା ଏବଂ ସୁତ୍ରା ଖାଟ ଓ ରେଡିଓଟି ପାଇଁ ନଗଦ ଦୁଇ ହଜାର ଟଙ୍କା ଦେବାର ସ୍ଥିର ହୋଇଛି । ଆପଣଙ୍କର ଏଥିରେ ଅଭିଯୋଗ କଣ ହେବ ? କେବଳ ଅନୁଷ୍ଠାନ ଓ ନ କୁଟୁମ୍ବ । ସେ ପ୍ରତ୍ୟେକଙ୍କୁ ଯୋଡ଼ା ଓ ଧୋତିଏ ଟଙ୍କା ଲେଖାଏ ମଧ୍ୟ ଦେବାକୁ ଜମିଦାରଙ୍କ ପକ୍ଷରୁ ଆମ୍ଭେ ଖୋଦ କବୁଲ କରି ଦେଉଛୁ । ଗ୍ରାମ ଦେବତାଙ୍କୁ ପାଇଁ ଦୁଇଶହ ଟଙ୍କା ମଧ୍ୟ ଜୋଗାଡ଼ମାନ ସବୁଠି ରଖାଯିବ । ଆଉ ଆପତ୍ତି କଣ ?" ମିଶ୍ରେ କହିଲେ, "ହଁ ସବୁ ହେଲା ଯେ, ଝିଅଟି ଯାଇ କଟକ କଲେଜରେ ଓକିଲାତି ପଢ଼ୁଛି । କେଜାଣି ନାହିଁ, ଆଜି କାଲିକା ଟୋକୀ, ତାର ଗୋଟାଏ ମତ ନେବା ଉଚିତ । ହିସାବ କଥା ହେଉଛି ମେଳକଟା ଦେଖିବା । ଗୋଟିଏ ବୋଲି ଝିଅ । ନ ବୁଝି ନ ସୁଝି କରିବାଟା ଅବଧି ହେବ ।" "ହଉ," ବୋଲି କହି ହରି ଭାଇଙ୍କ ଭିତରେ ଗଲେ । ମହାପାତ୍ରେ ଦେଖେ ଭଣ ପାଞ୍ଚି ଦେଖି ସ୍ଥିର

ବହୁତ ହୋଇ ଗଲାଣି, ମାତ୍ର ପ୍ରେମଲତା ବ୍ୟତୀତ ସେ ଆଉ କାହାକୁ ଜୀବନ ସଙ୍ଗିନୀ କରି ପାରିବେ ନାହିଁ । ଏହିତ ତୁମର ଇଚ୍ଛା ।"

ବାଡ଼ପଟେ ତାଙ୍କ ପାଖେ, ଗଛଅ ମୂଳେ, ପଡ଼ାରେ ବାହୁଡ଼ାକୁ ବସିଥିବା ସମୟରେ ମାଇପି ସମ୍ମାନ ଜାରି ହୋଇ ଗଲାଣି । ଯେଉଁ ମାଇପି ଜଣକ କୁହାମନ୍ତ୍ରୀ ହେଲା ସେ ହେଲା ତାହାର ଦଳ ସଙ୍ଗରେ ସମ୍ପର୍କ ବା ସମ୍ବନ୍ଧ । ହାତ ହଲେଇ କଥା କହିବା, ଓଠ ମଟିବା, କହୁ କହୁ ହସ ହସ ହୋଇ ପଡ଼ିବା, ମୁଣ୍ଡରୁ ବା ଛାତିରୁ ଲୁଗା ଖସିଗଲେ ଟାଣି ଆଣିବା, କେତେବେଳେ ଜିଭ କାମୁଡ଼ି ପକାଇବା, କେତେବେଳେ ପିଠିରେ ତ ତ କରି ଗାଲରେ ହାତ ଦେବା ପ୍ରଭୃତି ଅଭିନୟ ମାନଙ୍କରେ ଯେଉଁ ସ୍ତ୍ରୀର ଯେତେ ଦକ୍ଷତା ଅଛି, ସେ ହେଲା ଗାଁ ମାଇପିଙ୍କ ଭିତରେ ସେତିକି ଶ୍ରେଣୀ ଗଣିତା । ହେଲେ, ଯେ ହାତ ହଲେଇ ମୁହଁକୁ ମୁହଁ ଲଗାଇ ଏଣ୍ଡୁଅ ପରି ମୁଣ୍ଡ ଟୁଙ୍ଗାରି କଥା କହି ପାରିଲା ସେ ହେଲା ଜଗତ ଜିତା ।

ମହିମା ଗାଇରେ ହାତଦେଇ ତଟେ ମାଉ କହିଲା, "କି କାଳ ହେଲା ଲୋ ମା ! ଅଛବ ଲୋକର ଠେଙ୍ଗାଟେ, ତା'ଠ କି ରସ ଲାଗିଛି ? ବାବୁଭାୟା ପିଲାଗୁଡ଼ାକ ସହରରୁ ଜାଣି ହୋଇ ଆସୁଛନ୍ତି ତା ହାତରେ ପାନ, ପାଣି, ସବୁ ଖାଉଛନ୍ତି ! ମୁଁ ଶୁଣିଛି, ମୋତେ ସତ ଜମାକୁ ସବୁ ମଞ୍ଜି, ସେ କେଉଁଠ ଓ କିରବାବୁ ପୁଅକୁ ବାହା ହେଉଛି ! ଏ କାଳ ହେଲା ମଗ ବାବସ, ଦାସଏ ଖାଇଲେ ଗାଲି ଦେବ ବ୍ରାହ୍ମଣେ ଖାଇଲେ ଜାବୁଡ଼ା ।" ବୁଢ଼ୀଅପା ତହୁଁ ବହୁ.ରି ପଡ଼ି କହୁଛି "ମଲୁଲେ ମରହଟିଆଣୀ, ତଳ ତରଡ଼ା ଝୁସୁଛି ମଝି ବରଡ଼ା ହସୁଛି, ଉପର ତରଡ଼ା ଆଖି ବୋଲୁଛି ମୋ ଦିନକାଳ ଆସୁଛି । ତୁ ଜାଣୁଥିଲୁ ଜମାକୁ ଘରେ ସବାବେଳେ ଗନ୍ଧାପୁଲଥ ! କେଉଁ ଯୁଗରେ ଥିଲି ଯିନା ବ୍ରାହ୍ମଣମାନଙ୍କୁ ଜମିବାଡ଼ି ଖଞ୍ଜି ଦେଇ ରଜାମାନେ ପାଠ ଯୋଡ଼ କୁଣ୍ଡଳ ଦେଇ ପୂଜା କରୁଥିଲେ । ଏ ଯୁଗର ମହାତ୍ମ୍ୟ ଲୋ ମା, ସଭକର ଲାଟ କଡ଼ଲାଟ ମୋଟରରେ ମାତ ଆସୁଛନ୍ତି ହାତ ଭାଇରଙ୍କ

ଆସିବେ ରାମଚନ୍ଦ୍ରପୁର ବାସନ୍ତୀଙ୍କୁ ନେବାପାଇଁ । କିନ୍ତୁ ଯଦି ବାଟରେ ସେ ଏତେ ସମୟ ଅପେକ୍ଷା କରିବେଳକୁ ନର୍ସ ଟ୍ରେନିଙ୍ଗ କ୍ଲାସ ଆରମ୍ଭ ହୋଇ ଯାଇଥିବ । ନା, ସ୍ଥିର କଲେ, ପ୍ରେମଲତା ଏକୁଟିଆ ଯାଇ ତାକୁ ନେଇ ଆସିବ । ସେହି କଥାରୁ ଅନୁସାରେ ଗୋବିନ୍ଦ ମଲିକ ପାଖକୁ ଚିଠି ଆସିଲା ।

ଗାଁରେ ଡାକଘର । ଡାକ ବାବୁ ଡାଇଲ ଚୁଆନ ସଂଗୁ ସ୍ୱାମ ସ୍ୱାମ ମିସ୍ତ୍ରୀଙ୍କ ଛାତର ଲୋକ । ଚିଠିଟା ବା ହୁଡ ପଇଠ ନ ହୁଏ କେତେବେ ? ଚିଠି ପଡ଼ା ସବୁଲ ଯେପରି ପୂର୍ବରୁ ବନ୍ଦ ଥିଲା, ସେହି-ପରି ଖୁବ ସାବଧାନରେ ବନ୍ଦ କରାଗଲା । ଡାକ ପିଅନ ଗୋବିନ୍ଦ ମଲିକଙ୍କୁ ଚିଠିଟା ଦେଇ ଆସିବାରୁ ବାସନ୍ତୀ ଚିଠି ଖୋଲି ବାପମାଙ୍କୁ ସବୁ ପଢ଼ି ଶୁଣାଇ ଦେଲା ଓ ଖୁସି ହସିଟାଏ ହେଲା । ପରେ ପରେ ବାସନ୍ତୀର କଟକ ଯିବା ଆୟୋଜନରେ ଗୋବିନ୍ଦ ଲାଗିଲା । ଚିଠି ପହଞ୍ଚିବାର ସପ୍ତାହ ପରେ ପ୍ରେମଲତା ଡାକ୍ତର ସୁନ୍ଦରକୁ ଧରି ରାମଚନ୍ଦ୍ରପୁର ଗ୍ରାମରେ ପହଞ୍ଚିଲେ ।

ଦେଉଳଘର ଅଡ୍ଡାବାଲାମାନଙ୍କ ମଧ୍ୟରେ ଗୋଟାଏ ଶିହରଣ ଖେଳିଗଲା । ପୂର୍ବରୁ ନିରୁପିତ ଥିବା ଷଡ଼ଯନ୍ତ୍ର ଅନୁସାରେ ଯେଉଁମାନଙ୍କ ଉପରେ ଯାହା ଭାର ଥିଲା, ତାହା ତୁଲାଇବା ପାଇଁ ଯେ ଯାହାର କାର୍ଯ୍ୟରେ ନିଯୁକ୍ତ ହେବାକୁ ଚାଲିଗଲେ ।

ଅପରାହ୍ନର ଧୂଆ । ଜଗନ୍ନାଥ ସଡ଼କ ଧୂଳିରେ ଗୋଟିଏ ବଳଦଗାଡ଼ି ଧୂସରିତ ହୋଇ ଯାଉଛି । ଗାଡ଼ିରେ ଭାଡ଼ିକୁ ବୋଝାଇ କିଛିଏ ନାହିଁ । ଯୁଗପତ୍ ତିନିଜଣ ମୋଟା ମୋଟା ଲୋକ ବସିଛନ୍ତି, ପ୍ରେମଲତା ଓ ସୁନ୍ଦରଟିର ମୁହଁରେ ଗୋଟି ଗୋଟି କରି ତିନିଟା ମୋଟା କମ୍ବଳ ଘୋଡ଼ାଇ ପକାଇ ମାଡ଼ିବସିଲେ । ଆଉ ଦୁଇଜଣ ଲୋକ ବାସନ୍ତୀର ପାଟିରେ ଗୋଟାଏ ଚଦର ମାଡ଼ିଦେଇ ଠେଲିଦେଲେ ତାକୁ ଗୋଟାଏ ଛଇଆ ଭିତରକୁ । ଗାଡ଼ିଟିର ଦ୍ୱାର ବନ୍ଦ କରାଗଲା । ଦୁଇପଟେ ଦୁଇ-

ଜଣ ଲୋକ ରହିଲେ । ସ୍ୱତନ୍ତ୍ରଭାବେ ଲୋକ ସବାରୀ ଡାକିଲେ ସ୍ୱଳ୍ପରେ ତାହା ତାଙ୍କର ଅଭିମୁଖେ । ପ୍ରାୟ ଘଣ୍ଟାଏ ପରେ ଅନ୍ୟ ଲୋକମାନେ ଆସି ସେମାନଙ୍କ ସଙ୍ଗେ ମିଶିଲେ ।

ନିର୍ଦ୍ଦିଷ୍ଟ ସ୍ଥାନରେ ସବାରୀ ପହଞ୍ଚିବାକୁ ବାସନ୍ତୀଙ୍କୁ ଗୋଟିଏ ନିଷ୍ଟଭ ଦଣ୍ଡକ୍କୁ ନିଆଗଲା । ସେଠାରେ ପୂର୍ବରୁ ଖାଦ୍ୟ, ପାନୀୟ ଇତ୍ୟାଦି ଆଦି ପ୍ରସ୍ତୁତ ଥିଲା । ବାସନ୍ତୀ ଯେପରି ସ୍ୱଇଚ୍ଛାରେ ଗୃହର ପରିସର ତ୍ୟାଗକରି ବାହାରେ ବୁଲି ନପାରିବ, ସେଥିପାଇଁ ସମସ୍ତ ବନ୍ଦୋବସ୍ତ ଥିଲେହେଁ ଚଳାଚଳ ପାଇଁ କୌଣସି ଅସୁବିଧା ମଧ୍ୟ ନଥିଲା । ବନ୍ଦ୍ଧାରା ପ୍ରକୃତି ପରିବର୍ତ୍ତନରେ ତତ୍ପର ଥାଏ । ବାସନ୍ତୀର ଶରୀର ପିଞ୍ଜରାବଦ୍ଧ କିନ୍ତୁ ତାର ମନକୁ ବାନ୍ଧି ରଖିବାର ଶକ୍ତି କାହାର ଅଛି ? ଦିନସାରା ଆଖିରେ ନିଦନାହିଁ । କାରଣ କଣ୍ଟକ ବନପଥ ମନ ଘରେ ଅନ୍ତରର ବେଦନା ଉଚ୍ଛ୍ୱାସ ବ୍ୟକ୍ତ କରିବାକୁ ଜଣକର ସ୍ଥାନ ରହିଲେ । ସେ ସେହି କପିଳବାବୁଙ୍କ ଛଡ଼ା ଆଉ କେହି ନୁହେଁ । ମାତ୍ର ଅରଣ୍ୟ ରୋଦନ ତା'ର ହୋଇଛି ଏକମାତ୍ର ଆଶ୍ରୟ ।

ତେଣେ ପ୍ରେମଲତା ଓ ତାଙ୍କର ସହଚର ଡାକୁମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଭୟରେ ଅବଶ ହୋଇ ପଡ଼ିଥିଲେ । ମନ୍ଦ ସମସ୍ତେ ଆନାହତ ଓ ଶତ୍ରୁ ଦ୍ୱାରା ପରିତ୍ୟକ୍ତ । ସେମାନଙ୍କର ସ୍ୱାଭାବିକ ମନର ଅବସ୍ଥା ଫେରି ଆସିବାକୁ ପୂର୍ବବତ୍ ଶତଃ ଅପେକ୍ଷଣ କରି, ତଥାପି ଶଙ୍କିତ ଚିତ୍ତରେ ସେମାନେ ସତ୍ୟବାଦୀ ଥାନା ଆଡ଼କୁ ଅଗ୍ରସର ହେଲେ । ଥାନା ସମ୍ମୁଖରେ ଖଗଡ଼ ଅଠକଲ । ରାସ୍ତାରେ ଯାହା ଯାହା ଘଟିଥିଲା, ସେ ସମସ୍ତର ବିସ୍ତୃତ ବିବରଣ ଥାନା ଅଫିସର ତାଙ୍କର ଡାଏରୀରେ ଟିପିଲେ । ଥାନା ଅଫିସରଙ୍କର ଉପଦେଶ ପାଇ ପ୍ରେମଲତା ଖଗଡ଼ ଓ ଖଗଡ଼ଆଙ୍କୁ ଷ୍ଟେସନ ନିକଟରେ ବସାଯାଇ ଦେଲେ ଓ ଟ୍ରେନ ଅପେକ୍ଷାରେ ରହିଲେ । ଘରେ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା ନଅ । ଏବେ ଭାନନ୍ଦ ବାବୁ ସ୍ତ୍ରୀୟ କନ୍ୟାର ବିପଦ ଓ ବାସନ୍ତୀର ହରଣକଥା ବାର୍ତ୍ତା ଶୁଣି ବଡ଼ ବ୍ୟସ୍ତ ହେଲେ । ମା ଆସି "ମୋ ପ୍ରେମ ବୋଉ

କୁଣ୍ଡାଇ ପକାଇଲେ ଓ ଖୋସ୍ ତ ଜଟ ମୁଣ୍ଡ ଦେହ ଓ ମୁହଁକୁ ହାତରେ ଅଉଁସିବାରେ ବ୍ୟସ୍ତ । ପ୍ରେମଲତା ତରତର ହୋଇ କହିଲେ, "ବୋଉ, ଆଗ ନନାଙ୍କ ନିକଟକୁ ଟେଲିଗ୍ରାମ କରି ଏ ଘଟଣା ଜଣାଇ ଦେ । ସେ ହେଲେ ଏଠାରେ ଯେ ଗୋଟାଏ କିଛି ପ୍ରତିକାର କରିବେ ।" ମା କହିଲେ, "ନାନା ସେ ପରୀକ୍ଷା ଦେଉଥିବ । ଏ କଥା ଶୁଣିଲେ ତାର ମନ ବ୍ୟସ୍ତହେବ । ପରୀକ୍ଷାରେ ଖରାପ ହୋଇପାରେ । ପରୀକ୍ଷା ସରିଯାଉ ଜଣାଇ ଦେବା । ତୁ ବା ଏକୁଟିଆ କଣ କରିଯାଆନ୍ତା । ନନା ଆସି ତୋତେ ନେଇ ଛାଡ଼ିଦେଇ ଆସିବ । ଏ ବୁଢ଼ା ଦିନରେ କଣ କଲିକତାର ସହଁ ହୋଇ ଯାଉଛୁ ?" ଅଶ୍ରୁପୂର୍ଣ୍ଣା ଦେବୀ ଏହା କହି ଈଶ୍ୱର ମଙ୍ଗଳ କାମନା କରି କେତେ କଣ ମନାସି ଗଲେ ।

ଗୋବିନ୍ଦ ମଲ୍ଲିକ ଏପର୍ଯ୍ୟନ୍ତ କୌଣସି ସମ୍ବାଦ ପାଇବାକୁ ନାହିଁ । ତହିଁପର ଦିନ ଗାଧୁଆ ବେଳକୁ ଗାଁ ର ଲୋକ କିଏ ପୋଖରୀ କୂଳରେ କିଏ କୂଳ ଧରି ବାଲିକୁ ଫେରିଛି ତ କିଏ ସ୍ନାନ ଶୌଚ ହୋଇ, 'ହରେ ମୁରାରେ ମଧୁକୈଟଭାରେ, ଗୋବିନ୍ଦ ଗୋପାଳ ମୁକୁନ୍ଦ ସୌରେ' ପ୍ରଭୃତି ମହାମନ୍ତ୍ର ଉଚ୍ଚାରଣ କରି ଅଗାଧୁଆ ଲୋକଙ୍କ ଆଡ଼େ ହୋଇ, ପାଣି ଗାଳଟି ଧରି ସ୍ୱଚ୍ଛ ଟେରକୁ । କଣ୍ଠର ସାହ ମୁଦ୍ରେ ବାଳୁଆ କୁକୁରଟା ଭୋ ଭୋ ରଡ଼ି ଛାଡ଼ିବାରୁ ଆଉ ଦି'ଟା କୁକୁର ମଧ୍ୟ ତା' ସଙ୍ଗେ ସ୍ୱର ମେଳେଇ ଦେଲେ । ଆଗରେ ମୁରୁସିବାକୁ କୋତା ମଚ୍ ମଚ୍ କରି ଆସୁଛନ୍ତି । ତାଙ୍କ ପଛକୁ ଦୁଇଜଣ କନେଷ୍ଟବଲ୍ ବେଁଟା ଲାଉଦେଇ, ବେଡ଼ି ଓ ହାତକଡ଼ା ଧରି ଲୁଥ ଲୁଥ ମାଡ଼ି ଯାଉଛନ୍ତି । କେତେକ ଗାଈ ଜଗା ଟୋକା ଗୋରୁ ପଲକୁ ଚରିବା ପାଇଁ ଛାଡ଼ିଦେଇ ପଞ୍ଚଣ ଧରି ଗାଁ ବରଗଛ ମୂଳେ ତାସ୍ ଖେଳୁଥିଲେ । କେଉଁକାଳେ ସିନା ଥିଲା ଲାଲପଗଡ଼ିଆଙ୍କୁ ଦେଖି ଲୋକ ଡରୁଥିଲେ, ଆଜକାଲି ପୁଲିସ ଦଳ ଦଳ ଦେଖିଲେ ଗାଉଁଲି ଗାଈଜଗା ଟୋକା ଗୁଡ଼ାକ ମଧ୍ୟ କୁତୂହଳ ହୋଇ ତାଙ୍କ ପଛେ ଦୌଡ଼ାଇବେ ଘଟଣା ଲକ୍ଷ୍ୟ କରିବାକୁ । ରାମଚନ୍ଦ୍ରପୁର ଗାଁର

ପାଇକମା ଟୋକାଏ ଜଣ ଏଡ଼େ ଗମାର ଯେ, ମୁନସିଙ୍କ ଦେଖି ପିମ୍ପୁଡ଼ି ଗାତ ଖୋଜିବେ ! ମୁନସି ପଛରେ ଟୋକାମୁଣ୍ଡାଙ୍କ ଯିବାର ଦେଖି ଲଲିବାବୁଙ୍କୁ ଓ ଗାଁ ଦାଣ୍ଡରୁ ଭଦ୍ରଲୋକ ଓ ମହାଜନଙ୍କ ସମସ୍ତେ ଧାଇଁଲେ ତାଙ୍କ ପଛେ ପଛେ । ଜଣେ କହିଲା ଠିକ ହୋଇଛି, ଗୋଟାଏ ସେବା କୁଟୀର ବନାଇ ଜଣ ଅଜ ଣ ଜଣ ମାନଲେ ନାହିଁ । ଗାର ମାନ ବୁଝେଇଲେ ଓ ଅଗେଙ୍କା ପଡ଼ା ଟୋକାଏ । ଜଣେ କହିଲା, “ନଇଁମ ବୋଧହୁଏ କଣ୍ଟସ ସହରେ କେଉଁଠି ସ୍ୱେବସ୍ୱର ହୋଇଛି ।” ସେନେଇ ଓଝା କହିଲା, “ମୁନସୀ ବବୃତ ଜଣ ଗୋବସ ମଣ୍ଡଳ ଘରକୁ ମୁଁହାଇଲେଣି । ତା ମୁଣ୍ଡରେ ଟଲ ଉଳଲା ଜାଣ । ବୋଧହୁଏ ସ୍ୱରରେ ସ୍ୱେରଙ୍କ ସଙ୍ଗେ ହଲ ରହୁ ଦିନରେ ଭୁଲେଇ ହେଉଛି ।” ହରି ମୁହୂଲ ଟିକଏ କଥା ଜୁଆଇ ଦେଇ କହିଲା, “ଯେ ଥାଏ ଓର ନଟପଟ ଗୋବନ୍ଦ ମାରନ୍ତି କପଟେ ।” ଗୋବସ୍ତ କୁରସ୍ତୁ ମୁନସୀବାବୁଙ୍କୁ ଦେଖି ତରତର ହୋଇ ଘରଭିତରକୁ ପଶି ଯାଇ ପୋଷାକ ପିନ୍ଧି ବାହାରି ଆସିଲା ଓ ମୁନସୀ ବାବୁଙ୍କ ଦୁଇ ହାତରେ ଜୁହାରଭେଟ ଠିଆହେଲା । ବାବୁ ତାକୁ ସେବା କୁଟୀରକୁ ଡକାଇ ନେଲେ । ଚୌକିରେ ବସିପଡ଼ିବା ପରେ ପ୍ରେସିଡେଣ୍ଟ ସମ ସମ ନିଶ୍ୱ ଖୋଦ ଗୋଟିଏ ଟନା ଥାଳଅଟିକୁ ମେଜ ଉପରେ ଥୋଇ ଦେଇ ଯୋଡ଼ ହସ୍ତରେ ବାବୁଙ୍କ ନମସ୍କାର କରି କହିଲେ, “ହଜୁର, ଜଳ ସ୍ୱ ଜଳପାନର ବ୍ୟବସ୍ଥା ହୋଇଛି । ଟିକଏ ବିଶ୍ରାମ ନେଲେ ଆଜ୍ଞେ କରନ୍ତୁ ।” ମୁନସିବାବୁ କହିଲେ, “ହଉ ଏଠାରେ ଜାମ ଜୁଟେଇ ଯିବ । ଆପଣ ବସନ୍ତୁ ।”

ମୁନସୀ ବାବୁ ଗୋବସ୍ତ ମଣ୍ଡଳଙ୍କୁ ପ୍ରଶ୍ନ କଲେ, “ତୋର ବାସନ୍ତୀ ନୋଳ ଗୋଟିଏ ଝିଅ ଅଛି ?’ ଗୋବସ୍ତ ଉତ୍ତର ଦେଲା, “ହଁ ହଜୁର, ସେ ଜାଲିଚ୍ଛ କଟକ ଯାଇଛି, ଜସ ପଠ ପଢ଼ିବାକୁ ସୁନ୍ଦର ଇଂରାଜ ନାନ ବାବୁ ଡାକ୍ତରଙ୍କ ଝିଅ ସାଥିରେ ।” ମୁନସୀ ବାବୁ ଉତ୍ସାହରେ କହିଲେ, “ହଁ, ତାଙ୍କ ଝିଅ ନାଁ ପ୍ରେମଲତା, ନାଁ ? ସେ

କଟକରେ ପଢ଼ନ୍ତି, କେମିତି ଗୋଟାଏ ସୁବିଧା ସୁଯୋଗ ଖୋଜୁଥିଲେ । ଗୋବସ୍ତ ତ ଅସ୍ପୃଶ୍ୟ ଲୋକ । ସେ ବୁଝି ପାରିଲା ନାହିଁ । ତାକୁ ଶିଖେଇ ନର୍ସ ପାଠ ପଢ଼େଇ ସରକାରୀ ସ୍କୁଲ ଭର୍ତ୍ତି କରେଇଦେବେ ବୋଲି କହି ବୁଝାଇ ଦେଲେ । ଲୋକେ ଜାଣିବାକୁ ଭଉଣୀ ଘ୍ରାସ କରେଇ ନେଲେ କଟକକୁ । କିନ୍ତୁ ଟଙ୍କା ପଇସା ଦେଇ ବଦମାସ ମନ୍ଦ ଲୋକଙ୍କୁ ଲଗାଇ ଦେଇଥିଲେ, ବାଟରୁ ବାସନ୍ତୀକୁ ଉଠାଇ ନେଇ ଚାଲିଗଲେ, ସମସ୍ତେ ଜାଣିବେ ଡକାଏତମାନେ ନେଇଗଲେ । କିନ୍ତୁ କୌଣସି ଗୁପ୍ତ ଜାଗାରେ, ସେ କଣ୍ଟସ୍ ତାକୁ କଟକରେ ରଖିବେ, ଯେପରି ସେ ସେଠାକୁ ଯିବା ଆସିବା କରି ପାରିବେ ।”

ଗୋବସ୍ତ ଭକ୍ତ କହିଲା, “ନା ହଜୁର, ସେପରି ଖରାପ ସମ୍ବନ୍ଧ ସମ୍ବନ୍ଧ ମୁଁ କିଛି ଦେଖେ ନାହିଁ । ବାସନ୍ତୀ ଏଠି ସେବା ଘରେ ମାଇକିନିଆ ଝିଅଙ୍କୁ ପଢ଼ାଏ, ସୂତା କଟାଏ । ମରଦ ପିଲା ଓ ବୁଢ଼ାଙ୍କୁ ଅକ୍ଷର ମଧ୍ୟ ଶିଖାଏ । ଆଉ ଏ ସବୁ ଚାଳଚଙ୍ଗ, କଟା, ଖଡ଼ିକା ଓ ବାଉଁଶର ଜିନିଷମାନ ଯାହା ତିଆରି ହୋଇଛି, ତାକୁ ସବୁ ବାସନ୍ତୀ ଶିଖାଇ କାମ ଚଳାଏ କରେ । ଆମ୍ଭେମାନେ ଅସି ଖବର କାଗଜ ଶୁଣୁ ।” ଅନ୍ୟାନ୍ୟ କର୍ମୀ ଓ ବାଉରୀ ଲୋକ ସବୁ ଜମିଥିଲେ, କହିଲେ “ନାହିଁ ଅଜ୍ଞା, ଡାକ୍ତର ବାବୁଙ୍କ ପୁଅ ଝିଅ ମଝିରେ କେବେ କେବେ । ତାଙ୍କୁ ଆମେ ଦୋଷୀ କରିବୁ ? ଆମେ ଅନ୍ଧ ନରକରେ ପଡ଼ିବୁ, ହଜୁର ।”

ମୁନସୀ ବାବୁ ଯଗି ଭଲ ପଚାରିଲେ, “ଆଉ ପ୍ରେସିଡେଣ୍ଟ ବାବୁ କ’ଣ ମିଛ କହୁଛନ୍ତି । ନା, ତମେ ଖଳ ଙ୍କର ଖଳ୍ଲୁ ବରଷରେ ସୁବା ନାବାଳକ କହିବ ନାହିଁ । ତୁଇରେ ଗୋବସ୍ତ, ତୁ ଖଳା ପୁରୁଣା ବଦମାସ । ତମକୁ ଯେ ନ ଚହ୍ନିଛି, ସେ ସାସ୍ତ ଭୋପଙ୍କୁ ଚହ୍ନି ନାହିଁ । ଝିଅର ଭକତକୁ ଭଲ କାଲରେ ବାସନ୍ଦ ହେବୁ ବୋଲି ଜଣୁଛୁ । ଏବେ ସବୁକଥା ବୁଝିବେ । ହେଁ, ରୋଜଗାର ଦେଖେଇ ହେଉଛି ।

ଏ ସବୁ କଣ୍ଡ ହେଉଛନ୍ତି କୋଉ ଆଗରୁ ଥାନାରେ ତ ଇଏ କଣ୍ଡ ନାହିଁ ?'' ଟେବୁଲ ଉପରେ ବେତଡ଼ା ମାଡ଼ ଖେଳି ଗୋବରାର ପିଳେହି ପାଣି । କହିଲା, "ନାହିଁ ଆଜ୍ଞା, ଏସବୁଡ଼ାକ ଡାହା ମିଛ ।''

ରାମରାମ ମିଶ୍ରେ ଗୋବରା ଅଡ଼କୁ କଟାକ୍ଷ କରି ପୁଣି କହିଲେ, "କଣ, ଡାହା ମିଛ ? ଗୁରୁ ପାଞ୍ଚଦିନ ତଳେ ତୋ ପାଖକୁ କଣ ଚିଠି ଆସି-ନାହିଁ ? ଡାକପିଅନ କଣ ମିଛ କହୁଥିଲେ ?' ଗୋବରା କହିଲା, "ନୁହଁ ହଜୁର, ଚିଠିଖଣ୍ଡେ ବାସନ୍ତୀର ଜଠର ପଡ଼ି ବାନ୍ଧ ଯିବାପାଇଁ କବିନବାବୁ ଲେଖି ପଠାଇଥିଲେ । ସେ ଆସି ପାରିଲେ ନାହିଁ, ତାଙ୍କର ପରୀକ୍ଷା କଣ ହେଉଛି । ଆଉ ତାଙ୍କ ଭଉଣୀଙ୍କ ସଙ୍ଗେ ବାସନ୍ତୀକୁ ପଠାଇ ଦେବାକୁ ଲେଖିଥିଲେ ।''

ମିଶ୍ରେ ସତେ ଯେପରି ଯୁଦ୍ଧରେ ଜୟଲାଭ କଲେ ଏବଂ ହସି ହସି କହିଲେ, "ଦେଖିଲେ, ଦେଖିଲେ ହଜୁର ! ଏହିକ୍ଷଣି ସବୁ ମିଛବୋଲି କହୁଥିଲା । କେଉଁ ମୁହଁଟା ମାନିଲା ? ସେକଥା ଆମ ଗାଁ ଲୋକେ ମଧ୍ୟ ସାକ୍ଷୀ ଦେବେ ।'' ମିଶ୍ରେ, ସଦାନନ୍ଦ ଚନ୍ଦ୍ର ବେହେରା, ଲକ୍ଷ୍ମଣ ଢୋଲକା ସିଂହ ଓ ମାର୍କଣ୍ଡ ମର୍ଦ୍ଦାଙ୍କୁ ଆଖିଠାରି ଦେବାରୁ ସେମାନେ ଜଣଜଣ କରି କହିଲେ, "ହଁ ହଜୁର, ସେ ଡାକ୍ତର ବାବୁଙ୍କ ପିଲଙ୍କ ସାଥିରେ ପଡ଼ି ପ୍ରେସିଡେଣ୍ଟ ବାବୁଙ୍କ ପୁଅ ମୋହନବାବୁ ମଧ୍ୟ ଜାତିପତି କିଛି ନମାନି ଖିରିସ୍ତାନ ହୋଇ ଯାଇଲେଣି । ମହାନ୍ତିଘରେ ଖାଇବା ପିଇବା, ତାଙ୍କ ଘରେ ରହିବା, ଆଉ କଣ କହିବୁ ଆଜ୍ଞା, ଡାକ୍ତର ବାବୁଙ୍କ ଝିଅ ଯୋଗୁ ସେ ବ ଘରଦ୍ୱାର ପଶୁରିଲେ ନାହିଁ । ଶେଷକୁ ସଙ୍ଗ ଖୋଲାଖୋଲି ଲେଖା ହେଲେ, ଡାକ୍ତର ବାବୁଙ୍କ ଝିଅକୁ ବାହାହେବେ । ଲେଖନଯୁକ୍ତ ଚଉଧୁରୀ ଘର ଠାକୁ ବସିଛନ୍ତି; ଝିଅସଙ୍ଗେ ଖୁଇଜଣଙ୍କୁ ଅଧେ ଦିଅନ୍ତେ । ଝିଅକୁ ଦେଖିବ କାଣ ସହରର ଅପସରା, ଉଡ଼ୁଛି ପରି ଚାଲୁଛି, ସବୁ କଣ୍ଡୁର !

ମୁନସୀବାବୁ ଗୋବରାକୁ ଚିଠିଆଣିବା ପାଇଁ ଆଦେଶ ଦେଲେ । ଗୋବରା ଚିଠିଆଣି ଦେଲା । ମୁନସୀବାବୁ ପଢ଼ିସାରି, ଯେ ଯାହାସବୁ

ଗାଁକୁ ଯାଉଥିଲେ ସେ ସବୁ ନିଜ ନେଇଥିବା ଡାଇରୀରେ ଲେଖି ଏ ଘଟଣା ରଖିଲେ । ଲଳନ୍ଦୁର ଶେଷବେଳର ଯୌବନକୁ ସଙ୍ଗରେ ଧରି ଥାନାକୁ ଚାଲିଗଲେ ।

କିନ୍ତୁ ଆମ୍ଭେମାନେ ସେହି ଯୌବନ ମଳୟ ଠାରୁ ବସନ୍ତରାଜେ ବୁଝି ଥିଲୁ କେଉଁଠି ମୃଣାଳୀବାବୁ ଝମଝମ ବିଶ୍ରାମ ଘରେ ଅଧଘଣ୍ଟାଏ ଠିକଣା ହୋଇ ଫେରିଲାବେଳକୁ ତାଙ୍କ ଛାତି ପକେଟରୁ ବାହାରିଲା ଲେଖାଚିଠି ନୋଟ ବହିରେ ଖଣ୍ଡ ଅଳ୍ପ ଅଳ୍ପ ଦିଶୁଥିଲା ।



# ସପ୍ତମ ପରିଚ୍ଛେଦ

ନଳିନ ବାବୁଙ୍କର ପରୀକ୍ଷା ସରି ଯାଇଛି । ମନ୍ମଥ ମୋହନୀ ବାବୁଙ୍କର ଏଫ୍ ପ୍ରଥମଶ୍ରେଣୀ ପାଶ ସରିଥିଲେ ହେଁ ଦ୍ୱିତୀୟ ଶ୍ରେଣୀରେ ପରୀକ୍ଷା ଦେଇ-ନାହାନ୍ତି । ଦିନେ ଉଭୟେ ତାଠଯେଣ କୂଳରେ ଗୋଟିଏ ସିମେଣ୍ଟ ବେଞ୍ଚ ଉପରେ ବସି କଥାବାର୍ତ୍ତା କରୁଥାନ୍ତି; ନଳିନ ବାବୁ ପଚାରିଲେ, "ଭାଇନା, ମୋ ବାଁ ଆଖିଟା ଡାହାଣ ନ ବୁଝିବାରୁ ହେଲା କେଁଉଛି, କିଛି ଫଳ ହେବ କି ? ପରୀକ୍ଷାରେ ବେଶୀ ଗୁଡ଼ାଏ ପରିଶ୍ରମ କରିବାରୁ ହେଲା ! ଆଉ କ ଗୋଟାଏ କଥା, ପ୍ରେମଲତା ତମ ଗାଁକୁ ଯାଉଥିବା ଶୁଣିଲୁ ଆମ ଦ୍ବିଜବରକୁ ସଙ୍ଗେ ନେଇ ବାସନ୍ତୀକୁ ନେଇ ଫେରି ଆସିଥିଲେ ତା'ର ନାମ ଲେଖା ହୋଇ ଥାନ୍ତା । ସତ ଆଠ ଦିନ ହୋଇଗଲା । କିଛି ଉଠିପଡ଼ ନାହିଁ । ମନରେ ବଡ଼ ସନ୍ଦେହ ହେଉଛି ।"

ମୋହନୀବାବୁ କହିଲେ, "ଆଖିଟା କେଉଁଠା ଯେତେ ସତ ନୁହେଁ ମନଟା କେଉଁଠାର ବିଶେଷ ଲକ୍ଷଣ ପ୍ରକାଶ ପାଉଛି । ଯାହା ହେଉ, ପରୀକ୍ଷା ସରି ଯାଇଛି । ଫୁଲି କହିବାର କଥା, କେବଳ ମୋ ପାଇଁ ଫଳ ରହି ଛଟ ଫଟ ହେଉଛ ଭଲେ ମନଟା ପଦର ଗଣ ଭଣିଗଣ୍ଡା ଘନଡ଼ା

ତଥାପି କେବଳ ବସନ୍ତର ମନ୍ଦ ମଧୁର ମଳୟ ସ୍ପର୍ଶ ଓ ବାସନ୍ତୀର ପ୍ରେମ ମକରନ୍ଦ ପାଇଁ ଉତ୍କଣ୍ଠିତ । ନୁହେଁ, ବନ୍ଧୋ ? ବୁଝିବାର ଅବକାଶ ନାହିଁ ।"

ମୋହିନୀ ବାବୁଙ୍କର ଏପରି ରହସ୍ୟଜନକ ମନ୍ତବ୍ୟରେ ବିପିନ ବାବୁ ହସି ଦେଇ ତାଙ୍କୁ ବାମ ହସ୍ତରେ ଗୋଟିଏ ସସ୍ନେହ ଧକ୍କା ଦେଇ କହିଲେ "ଯାଅ ହେ, ସବୁବେଳେ ଗୋଟାଏ ଥଟ୍ଟା ତାମସା ଭଲ ଲାଗେ ନାହିଁ ।"

ଏହି ସମୟରେ ମେସେଞ୍ଜର ଗୋଟିଏ ସାଇକେଲରେ ଆସି ସେମାନଙ୍କର ବସିଥିବା ବେଞ୍ଚକୁ ସାଇକେଲଟି ଅଉଜେଇ ଦେଇ କହିଲା, "ମୁଁ କଲେଜ ହଷ୍ଟେଲ ଖୋଜି ଖୋଜି ଆସିଲି । ସେଠି କହିଲେ, ଆପଣ ଏଇଆଡ଼େ ବୁଲି ଆସିଛନ୍ତି । ଦେଖନ୍ତୁ ଏ ଅର୍ଜେଣ୍ଟ ଟେଲିଗ୍ରାମଟି ନେଇ ଆସିଲି ।"

ବିପିନ ବାବୁ ଟେଲିଗ୍ରାମଟି ନେଇ ଖୋଲିଲେ । ଦୁଇ ବନ୍ଧ ପଢ଼ିଲେ,

Bepin behari Mahanty'West Hostel

Ravenshaw College, Cuttack. Basanti kidnapped a week since on way home. Police inquried your address. Take measures. Father.

ବିପିନ ବାବୁଙ୍କ ମୁଣ୍ଡ ଉପରେ ଯେପରି ଗୋଟାଏ ବଜ୍ରପାତ ହେଲା । ହଠାତ୍ କିଛି କ୍ଷଣ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସି ରହିଲେ । ମୋହିନୀ ବାବୁ କହିଲେ, "ବିପିନ ତୁମେ ଅତି ଶୀଘ୍ର ଘର ଯିବାକୁ ପ୍ରସ୍ତୁତ ହୁଅ । ଘର ସମ୍ବାଦ ଜାଣିବା ନିତାନ୍ତ ଦରକାର । ଏହାପରେ ଦୁଃଖଭାରି ହୋଇ ଦୁହେଁ ହଷ୍ଟେଲ ଆଡ଼କୁ ଚାଲିଲେ । ବିପିନବାବୁ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଠାରୁ ଅନୁମତି ପାଇ ଘରକୁ ବାହାରିବାର

ଟ୍ରେନରେ ଫେରିଲେ। ଘରେ ପହଞ୍ଚି ପ୍ରେମଲତା ଠାରୁ ଶିଳଞ୍ଜିନ ଦଙ୍କ ସମସ୍ତ ବିଷୟଟି ସେ ବୁଝି ନେଲେ। ତହୁଁ ପରଦିନ ଡକ୍ତର ବାବୁ ବିପିନଙ୍କୁ ଧରି ଚାଉନ ଥାନାରେ ହାଜର ହେଲେ। ପୋଲିସ ଇନସ୍ପେକ୍ଟର ଅଫିସର ୱ୍ୟାରେଣ୍ଟର କାରଣ ଦର୍ଶାଇ ସେହିଠାରେ ବିପିନ ବାବୁଙ୍କୁ ଗ୍ରେପ୍ତାର କଲେ। କିନ୍ତୁ ବିବେକାନନ୍ଦ ବାବୁଙ୍କ ଲୋକପ୍ରିୟତା ଓ ବିଶେଷ ଉଦ୍ୟମ ଫଳରେ ବିପିନବାବୁ ଜାମିନରେ ଖଲାସ ହୋଇ ଆସିଲେ।

ପ୍ରେମଲତା ସତ୍ୟବାଦୀ ଥାନାରେ ରିପୋର୍ଟ ଦେଇ ଆସିଥିବା କମ୍ବଳ ଚିରାଖଣ୍ଡକୁ ଚିହ୍ନି ଗୋବିନ୍ଦ ମଳିକ କହିଲା, "ବାବୁ, ଏ କମ୍ବଳ ଖଣ୍ଡକ ତ ସାକ୍ଷୀଗୋପାଳର ହାଲୁରାମ ଦୋକାନରୁ ପ୍ରେସିଡେଣ୍ଟ ବାବୁ ଓ - ପନ୍ଦର ଦୋଳଏ ଦିନ ତଳେ, ମୋ ଥାନା ପାଖ ଦିନ କିଣି ନେଇଥିଲେ।" ଗୋବିନ୍ଦର କଥା ଅନୁସାରେ ମୁନସୀବାବୁ ହାଲୁରାମ ଦୋକାନକୁ ଯାଇ ତାର ବହୀ ଖାତାରୁ ସତ୍ୟାସତ୍ୟ ବୁଝିନେଲେ। ପୁଣି ସେ ଦଳବଳ ସାଙ୍ଗ ରାମଚନ୍ଦ୍ରପୁର ଗ୍ରାମକୁ ଯାଇ ରାମରାମ ମିଶ୍ର, ସନାତନ ବେହେରା, ଲଛମନ ଡୋଦଳ ସିଂହ ଓ ମାର୍କଣ୍ଡ ମାଝୀଙ୍କୁ ଗ୍ରେପ୍ତାର କରି ସେହିଦିନ ପୁରୀକୁ ଚାଲାଣ କରିଦେଇଥିଲେ। କିନ୍ତୁ ମିଷ୍ଟର ବନେଟ ସବଡିଭିଜନାଲ ଅଫିସର ବଡ଼ କଡ଼ା ମିଜାଜର ଲୋକ। ରାମରାମ ମିଶ୍ରଙ୍କ ତରଫରୁ ଆଡ଼ଭୋକେଟ ଧରଣୀଧର ମହାପାତ୍ର ବହୁତ ଲଢ଼ାଲଢ଼ି କରିବା ସତ୍ତ୍ୱେ ହାକିମଙ୍କର ନିର୍ଦ୍ଦେଶ, ଯେ ପର୍ଯ୍ୟନ୍ତ ଅପହୃତା ନାରୀର ସନ୍ଧାନ ନ ମିଳନ୍ତି ସେ ପର୍ଯ୍ୟନ୍ତ ଆସାମୀମାନଙ୍କୁ ଜାମିନ ଛଡ଼ାଯିବ ନାହିଁ।

ଯାହାକୁ ରଖିବେ ଅନନ୍ତ, କି କରିପାରିବେ ବଳବନ୍ତ। ମାଧବ ସେନାପତି ଜଣେ ଛୋଟ କାଠ ଧରଣର ଠିକାଦାର। ତାଙ୍କ ଜଙ୍ଗଲରୁ ନା ୪ ନମ୍ବର କୁପଟି ନିଲାମ ଧରିଲା ବେଳେ ହାତରେ କିଛି ପାଣ୍ଠି ନ ଥିଲା। ମାତ୍ର ତାଙ୍କର ସାଢ଼ୁ ରାମରାମ ମିଶ୍ରଙ୍କଠାରୁ ଘର ଓ ଜମି ବନ୍ଧା ରଖି ପାଞ୍ଚ ହଜାର ଟଙ୍କା କରଜ ନେଇଥିଲେ। ଯାହା ହେଉ ମୁଣ୍ଡ ଝାଳ

କୁଣ୍ଡରେ ମାତ୍ର ପ୍ରାୟ ଦୁଇଶହ ହେବ ସେ ପୁରାଣ କାଠ ମହାଜନମାନଙ୍କୁ କାଠ ଯୋଗାଇ ଯାହା ଅର୍ଜନ କରୁଥିଲେ, ତାହା ବାବଦକୁ ପ୍ରାୟ ଅଧା ଅଧି ଶୁଝି ସାରିଲେଣି । ତାଙ୍କର ଭିତର ଜଙ୍ଗଲରେ କାଠ କଟାଳୀମାନଙ୍କ ପାଇଁ ଏକ ମାଟିଆଲି ଘର ତିଆରି ଥାଏ । ଆଉ ତାଙ୍କର ପୁଷ୍ପାସ୍ତ, ସ୍ୱାମୀ ଓ ସେ ନିଜେ ଗୋଟିଏ ଉଦ୍ୟାନୀର ବେଷ୍ଟିତ ଏକ ଖୁଆଡ଼ ଘରେ ଅବସ୍ଥାନ କରନ୍ତି । ଦୁଇଟା କୁକୁର ଖୁଆଡ଼ର ଦ୍ୱାରରେ ଖୋସ୍ ବୁଲୁଥାନ୍ତି । ବ୍ୟାଘ୍ର ବା ଚୋର ଡକାଏତମାନଙ୍କ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଦୁଇଜଣ ରାଣୁଆ ମଧ୍ୟ ପାଳିକରି ଅନବରତ ଦ୍ୱାରରେ ବନ୍ଧୁକ ପଡ଼ାଇ ପହରା ଦିଅନ୍ତି ସେହି ଘର ଭିତରେ । ସେନାପତିଙ୍କ ଶୋଇବା ଘରକୁ ଲାଗି ଗୋଟିଏ ଛୋଟ ଝରକା ଲଗା କୋଠରି । ସେହି କୋଠରିରେ ବାସନ୍ତୀ ପ୍ରାୟ ଏକମାସ ହେବ ଅବରୁଦ୍ଧ ଅବସ୍ଥାରେ ରହିଅଛି । ଖୁଆଡ଼ର ଚତୁଃପାର୍ଶ୍ୱ ବାଡ଼ ମଧ୍ୟରେ ତାହାର ସମସ୍ତ ନିତ୍ୟ ନୈମିତ୍ତିକ କାର୍ଯ୍ୟ ସମାପନ ହୋଇଥାଏ ।

କାଠକଟାଳି ସବରମାନଙ୍କ ସଙ୍ଗରେ ମଧ୍ୟ ଅନେକ ସବରୁଣୀ ଆସି ଝାଟି ବା ଡାଳଆ ନେଇ ଗୋଟି ଗୋଟି କରି ନିକଟସ୍ଥ ଗ୍ରାମରେ ବିକି-କରି ଜୀବିକା ନିର୍ବାହ କରନ୍ତି । କିନ୍ତୁ ବାସନ୍ତୀ ତ ତାହାର ନଜରରେ କେବେହେଲେ ପଡ଼ିନାହିଁ । ଅଝାଡ଼ ଜଙ୍ଗଲରେ ଏତେ ଲୋକ କାମ କରୁଛନ୍ତି, ସମୟେ ସମୟେ କଥାବାର୍ତ୍ତା ହୁଅନ୍ତି, "ଠିକାଦାର ବାବୁ ତ ଆମର ବାପ ମା, ତାଙ୍କ ଜମିକ ତ ଖାଉଛୁ, ତାଙ୍କରି ଦୟାରୁ ପୁରୁଷ କାହିଁ ନାହିଁ ନଥିବେ । ଆଉ ଆମ ସାନ୍ତାଣୀ ମାସେ ହେଲା ଆସିଲେଣି । ଟିକିଏ ଧଳା କି ଗୋରା ଏ ଗାଁ ଆଖି ଦେଖି ଖବର ହୋଇ ପାରିଲା ନାହିଁ !"

ମାଧବ ସେନାପତି ସୁଇଣ୍ଡି ନିବାସୀ, ବୟସ ପଚାଶରୁ କମ ହେବେ ନାହିଁ ସ୍ତ୍ରୀ ବିୟୋଗରେ ଦୁଇ ବର୍ଷ ହେଲା ବଡ଼ ଦୁଃଖିତ ହୋଇ ରହୁଥିଲେ । ବିଶେଷତଃ ନିଃସନ୍ତାନ ହେତୁ ତାଙ୍କର ତଥାକଥିତ ହିତା-କାଂକ୍ଷୀମାନେ ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କରିବାକୁ ବହୁତ ବଳାଉଥିଲେ ମଧ୍ୟ

ଶେଷରେ ହତୋତ୍ସାହ ହୋଇଥିଲେ । କାରଣ ପୂର୍ବ ଗୌରବ ଓ ଆଉ ନାହିଁ ଯେଉଁଥିରେ ସେମାନଙ୍କର ମଧ୍ୟ ଲାଳସା ତୃପ୍ତ ହୁଅନ୍ତା ! ମାତ୍ର ତାଙ୍କର ଉଚ୍ଚାକାଂକ୍ଷା ଏତେ ବଢ଼ି ଯାଇଥିଲା ଯେ ସମସ୍ତ ମିତ୍ରଙ୍କ ସ୍ତାବକରେ ବଳେଇ କପାଳକୁ ଚିରା ଛାଡ଼ିଲା ପରି, ହଠାତ୍ ସ୍ତବ୍ଧ ହୋଇ ଯାଉଥିଲେ । ଆମର ଯେମିତି ଗୋଟାଏ କଥା ଅଛି, ଅନ୍ଧାର ଘରେ କଳା ଗୋରା ସବୁ ସମାନ, ସେହିପରି ଠିକାଦାର ବାବୁଙ୍କର ପଶୁ ସମାଜ ସୃଷ୍ଟ ଅନ୍ଧାର ଜଙ୍ଗଲରେ ଜାତି ଅଜାତି ଠିକ୍ ମହାପ୍ରସାଦ ବତ୍ ।

ଏହିପରି ଏକ ପଶୁ ପ୍ରବୃତ୍ତି ବିଶିଷ୍ଟ କାମୁକର ହସ୍ତରେ ବାସନ୍ତୀ ପରି ଗୋଟିଏ ନବୀନା ବାଳାର ରକ୍ଷଣାବେକ୍ଷଣ ଭାର ଓ ସୁପ୍ତ ଅବସ୍ଥାରେ ତ ଏପରି ସ୍ଥାନ ନାରକୀୟ ସ୍ଥିତିରେ ନ୍ୟସ୍ତ ହୋଇ ପାରେ ! ଠିକାଦାରର ଘରେ ବସିରହି ବାସନ୍ତୀ ବଡ଼ ସନ୍ତ୍ରସ୍ତ ମନରେ କାଳ କଟାଉଛି । ତା ଶିକ୍ଷା,—ଖାଲି ପେଟ ପୋଷିବାକୁ ସୁଲୁଗୋଚର ଶିକ୍ଷା ସେ । ଚିନ୍ତାରେ ଦଳାମାଠ ପଡ଼ିଗଲାଣି । ବାପ ମା କଥା ମନେପଡ଼ୁଛି । ଆଉ ତାର ପ୍ରାଣର ସମ୍ବଳ ବିପିନବାବୁଙ୍କ ଫନସ୍ୱିତ ବଦନ ଜପାମାଳା । କର୍ଣ୍ଣ ଓଠ ଥଣ୍ଟିରେ ବେଳେବେଳେ ଏକ ଲୟରେ ସ୍ୱର ଛାଡୁଛି । ଆଖିରୁ ଲୁହ ଗଡ଼ିଯାଉଛି ଦୁଇଧାର ହୋଇ, ଛାତିଲୁଗା ଓଦାହୋଇଗଲାଣି, ତଥାପି ସାମନାରେ ବସିଲେ ମଧ୍ୟ ଜାଣିପାରୁ ନାହିଁ । କ'ଣ ତାର ଚେତା ଚୈତନ୍ୟ ନାହିଁ ! ମଣିଷପଣିଆ ସରିଯାଇଛି ! ସେ କଣ ଭାବୁଛି ଅଶୋକ ବନରେ ସୀତା ଦେବୀଙ୍କ କଥା ? ହନୁମାନ ପରି କିଏ ଆସି ବିପିନବାବୁଙ୍କର ସନ୍ଦେଶ ଦେବ ! ସତେ ବିପିନବାବୁ ଏ ନର-ରାକ୍ଷସ ହାତରୁ ତାକୁ ଉଦ୍ଧାର କରିବେ ! ବେଳେବେଳେ ପୁଣି ପ୍ରକୃତିସ୍ଥ ହୋଇ ଭାବୁଛି, "ନା, ବେଳେବେଳେ ଦୈବଲେ ନିଜେ ଉଦ୍ଧାରର ଚେଷ୍ଟା କରିବ । ମୋର କଣ ବୁଦ୍ଧି ନାହିଁ, ସାହସ ନାହିଁ ? ପଦ୍ମା, ସାବିତ୍ରୀ, ଗାର୍ଗୀ ଓ ମୈତ୍ରେୟୀ ପରି ସ୍ତ୍ରୀ—ସେମାନେ ବୁଦ୍ଧି ଓ ସାହସ ବଳରେ କି ଅସାଧ୍ୟ ସାଧନ କରିଯାଇ ନାହାନ୍ତି ?"

ଏହିମଧ୍ୟରେ ଠିକାଦାର ତାକୁ କେତେଥର ନାନା ପ୍ରଲୋଭନ ଦେଖାଇଛି, ତାକୁ ମିନତି ହୋଇଛି, ଶେଷରେ ପ୍ରାଣନାଶର ଭୟ ଦେଖାଇଛି, ତଥାପି ବାସନ୍ତୀ ଅଟଳ ଅଚଳ । ତେଣୁ ସେ ସେହି ନାରୀଟିକୁ ତାର ସମ୍ମୁଖରେ ଦେଖି ବ୍ୟଗ୍ରତାର ପଚାରିଲା, "ଠିକାଦାର ! ତୁମେ ମୋତେ ଏଠାରେ ଧରିଆଣି ଲଇ ଡ଼ଣ ଡ଼ ଆ ଡ଼ରିବାର ଉଦ୍ଦେଶ୍ୟ କଣ ?" ଠିକାଦାର ପ୍ରେମାତୁର ହୋଇ ଫୁସିଫୁସି କହିବାକୁ ଲାଗିଲା, "ମୁଁ ସ୍ୱଳ୍ପ ତୁମକୁ ପ୍ରଣୟ ଡୋରରେ ବାନ୍ଧିବାକୁ ।" ବାସନ୍ତୀ ଫଣୀପରି ଗର୍ଜି ଉଠି କହିଲା, "ତୁ ଚାହୁଁ ମୋର ପ୍ରେମ ନା ପ୍ରାଣ ? ପାପୀର ହାତରୁ ଇଜ୍ଜତ ରକ୍ଷା କରିବାକୁ ମୋତେ ବେଶ୍ ମାଲୁମ । ଏ ପିଣ୍ଡରୁ ପ୍ରାଣ ଛଡ଼ାଇବାକୁ ମୋତେ ମୁହୂର୍ତ୍ତେ ମାତ୍ର ଲାଗିବ । କିନ୍ତୁ ତର ସର୍ବନାଶ ହେବନି ତୁ ଇହକାଳ ଓ ପରକାଳରେ ମଧ୍ୟ ।"

ଠିକାଦାର କିନ୍ତୁ ମନେ ମନେ ଭାବିନେଲା, 'ଜଙ୍ଗଲୀ ପଶୁ ବି ଅଭ୍ୟସ୍ତ ହୋଇଗଲେ ପୋଷା ମାନୁଛି । ଏ କିଛିଦିନ ଗଲେ ମଣିଯିବ ।" ଏହି ଆଶାରେ ସେ ସ୍ଥାନ ତ୍ୟାଗ କରି ଚାଲିଗଲା । ନିଜ କୋଠରୀରେ ଖଟ ଉପରେ ବିଛଣାରେ ପଡ଼ି କେତେ ସୁଖର ସ୍ୱପ୍ନ ଦେଖିବାକୁ ଲାଗିଲା । କିନ୍ତୁ ନିୟତିର ବଜ୍ର ଅଟ୍ଟହାସ୍ୟ ତାହାର କର୍ଣ୍ଣକୁହରରେ ପ୍ରବେଶ କରି ପାରିଲା ନାହିଁ ।

ସନ ୧୯୪୨ ସାଲ । ସମଗ୍ର ବିଶ୍ୱର ହୃତ୍ପିଣ୍ଡ କମ୍ପି ଉଠିଛି, ଯେତେବେଳେ ହିଟଲରର ହିଂସାନଳ ଲେଲିହାନ ଜିହ୍ୱା ବିସ୍ତାର କରି ଗ୍ରାସି ଯାଉଛି ୟୁରୋପର ଗୋଟିକ ପରେ ଗୋଟିଏ ଦେଶ । ରୁଷର ଷ୍ଟାଲିନ ଗ୍ରେଡ଼ ସହରରେ ପ୍ରବଳ ଯୁଦ୍ଧ ଚାଲିଛି, ଘର ବାହାରେ ଚାଲିଛି ଜୀବନମୂର୍ଚ୍ଛା ଲଢ଼େଇ ରୁଷ ସୈନ୍ୟ ଓ ଜର୍ମାନ ସେନା ମଧ୍ୟରେ । ସମଗ୍ର ପୃଥିବୀର ବଡ଼ବଡ଼ ଶକ୍ତି ସାମରିକ ଭାବରେ ଦୁଇଭାଗ ହୋଇ ଯାଇଛି । ଏକ ପକ୍ଷେ ଜର୍ମାନୀ, ଇଟାଲୀ ଓ ଜାପାନ ଏବଂ ଅନ୍ୟପକ୍ଷେ ବ୍ରିଟେନ, ଆମେରିକା, ଫ୍ରାନ୍ସ, ରୁଷ ଓ ଅନ୍ୟାନ୍ୟ ଛୋଟ ଛୋଟ

ଏ ସାମ୍ରାଜ୍ୟବାଦ ଦେଶ—ସଂଗ୍ରାମରେ ଲିପ୍ତ ହେବାର ଏକାଧିପତ୍ୟ ପାଇଁ । ବ୍ରିଟିଶ ଭାରତର ବଡ଼ଲାଟ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ବିନା ଦେଶୀ ମତରେ ଏହି ବିଶ୍ୱଯୁଦ୍ଧରେ ଯୋଗ ଦେଇଛି ଭାରତ ମୂକ ଓ ଚାଳିତ ସୈନ୍ୟ ଯୁଟେ । ପୂର୍ବପଟେ ଜାପାନ ପ୍ରଶାନ୍ତ ମହାସାଗରର ଦ୍ୱୀପପୁଞ୍ଜ ଇଣ୍ଡୋଚୀନ, ଶ୍ୟାମ ଓ ମାଲୟକୁ ଦଖଲ କରି ବସିଛି । ବ୍ରହ୍ମଦେଶରେ ଇଂରେଜମାନଙ୍କର କଲଙ୍କଜନକ ପରାଜୟ ଓ ଭାରତର ଦ୍ୱାରଦେଶରେ ଜାପାନର ରଣ ଡିଣ୍ଡିମ ଶୁଣି ନିରସ୍ତ୍ର ଭାରତବାସୀ ବ୍ରିଟିଶ ଜାତିର ସମର ଶକ୍ତି ଉପରୁ ସମସ୍ତ ଆସ୍ଥା ହରାଇ ଆପଣା ନିଜକୁ ସଂଗଠିତ କରିବେ ସେଥିପାଇଁ ଅତି ଉଦ୍‌ବେଗ ଓ ଆତଙ୍କରେ ଚିନ୍ତାକୁଳ ହୋଇ ପଡ଼ିଛନ୍ତି । ଜାପାନ ଭାରତ ଆକ୍ରମଣ କଲେ ଯେପରି କୌଣସି ସାହାଯ୍ୟ ନ ପାଏ, ସେଥିପାଇଁ ଭାରତରକ୍ଷା ଆଇନ ବଳରେ ନାନା କଟକଣା ଜାରି ହୋଇଛି । ଡଙ୍ଗା, ସାଇକେଲ, ଶଗଡ଼, ମୋଟର ପ୍ରଭୃତି ଜବତ କରାହେଲା ଓ ଧାନ, ଚାଉଳ, ଖାଦ୍ୟ, ଶସ୍ୟ ଆଦିର ବ୍ୟୟ ନିୟନ୍ତ୍ରଣରେ ସରକାର ତରଫରୁ ଖୁବ୍ ତମାସା ଲାଗିଗଲା । ଉଡ଼ାଜାହାଜ ଆକ୍ରମଣରୁ ଲୋକଙ୍କୁ ରକ୍ଷା କରିବା ପାଇଁ ସହର-ମାନଙ୍କରେ ଟ୍ରେଞ୍ଚ ଖୋଳାହେବା, ସାଇରନ୍ ବା ସତର୍କ ଘଣ୍ଟା ବାଜିବା, ବ୍ଲାକ୍ ଆଉଟ୍ ବା ସନ୍ଧ୍ୟାରେ ସହର ତମସାଚ୍ଛନ୍ନ କରିବା ଓ ବୋମା ବର୍ଷଣ ଅଗ୍ନିରୁ ରକ୍ଷା ପାଇବା ପାଇଁ ଫାୟାର ବ୍ରିଗେଡ଼ ପ୍ରଭୃତିର କେତେ ନା କେତେ ବ୍ୟବସ୍ଥା ହେବାଦ୍ୱାରା ଦେଶ ତମାମ ଗୋଟିଏ ଆତଙ୍କ ସୃଷ୍ଟି ହୋଇ ଯାଇଥିଲା । ଏଥିରୁ ବିଶେଷ ବିଶୃଙ୍ଖଳା ସୃଷ୍ଟି କରିଦେଲା ଯେତେବେଳେ କଟକ ଜିଲ୍ଲାର କୁଜଙ୍ଗ, ହରିଶପୁର ଓ ସୁଖଳଦ୍ୱାର ଫୋଣାର୍ଡ ନିକଟରେ ଇଂରେଜ ଜାହାଜ ମାନଙ୍କର ଭଗ୍ନାବଶେଷ ସମୁଦ୍ରରେ ଦେଖାଦେଲା ଏବଂ କେତେକ ନୌ ସୈନ୍ୟ ଖଣ୍ଡିଆ ଖାବରା ହୋଇ କଟକ ଡାକ୍ତରଖାନାକୁ ଚିକିତ୍ସିତ ହେବାକୁ ଆସିଲେ । ମାଡ୍ରାସ ଟ୍ରଙ୍କ ରୋଡ଼ରେ ଅନବରତ ଧାବମାନ ହେଉଥିବାର ସୈନ୍ୟ-ବାହୀ ଟ୍ରକ୍ ମାନଙ୍କୁ ସମୟେ ସମୟେ ଲକ୍ଷ୍ୟବନ୍ଦ ବୃଷ୍ଟି ହେବା ଦେଖିଲେ କାହାର ମନରେ ଭୟ ସଞ୍ଚାର ନ ହେବ ? ସହରବାସୀଙ୍କୁ

ହେଲା କୋଳୁଆ ବସ୍ତୁ, ତେଲ ଥିଉ ଆଉ ଘାଟି ଦକାଠ ପଡିଲା । ଅନେକ ସରକାରୀ ସ୍ଥାନ ଗାଁ ଗଣ୍ଡା ମଫସଲ ବନ୍ଧୁବାନ୍ଧବ ଗୃହ ବା ଝାଡ଼ଜଙ୍ଗଲକୁ କଲେ ଆଶ୍ରୟ ।

ଠିକ୍ ଏହିସମୟରେ ଦେଶବାସୀଙ୍କର ମତ ବିରୋଧରେ ଇଂରେଜ ସରକାର ଜୋର ଜବରଦସ୍ତି କରି ଭାରତକୁ ଯୁଦ୍ଧରେ ପୂରେଇଥିବା ହେତୁ, ମହାତ୍ମା ଗାନ୍ଧୀଙ୍କର ନେତୃତ୍ୱରେ ଦେଶର ପ୍ରତିନିଧିତ୍ୱ କରୁଥିବା କଂଗ୍ରେସ,ସରକାରଙ୍କର ମୁଖ ଉପରେ ଘୋର ପ୍ରତିବାଦ କଲା । ମହାତ୍ମା ଗାନ୍ଧୀ ପ୍ରମୁଖ କଂଗ୍ରେସ ନେତାମାନେ ଗିରଫ ହୋଇ ଜେଲ ବରଣ କଲେ । ଦେଶବାସୀଙ୍କର ବିକ୍ଷୋଭ ପ୍ରଦର୍ଶନ ଓ ସରକାରଙ୍କର ଦମନନୀତି ଏକ ପ୍ରଳୟଙ୍କର ବାତାବରଣ ସୃଷ୍ଟି କରିବାକୁ ନାଗରିକ ଜୀବନ ସଙ୍କଟାପନ୍ନ ହେବାରେ କୌଣସି ବିଚିତ୍ରତା ନାହିଁ । ପୁଲିସର ଲାଠି ପିଏ ଜନତାର ରକ୍ତ; ଲୁହବୁହା ଗ୍ୟାସ୍ ବନ୍ଧୁକ୍ ଧଙ୍କ ନୟୂନ ଅବସନ୍ନ ବୁଝାଏ ହେଉଛି । ଗର୍ଜିଉଠିଲେ ଗୋଳା ବନ୍ଧୁକ କରି ଗଗନ ବିଦାରି, ଟେଲିଗ୍ରାଫ୍ ତାର ଓ ରେଲ ଲାଇନ ହେଲା ଛିନ୍ନ, ଟ୍ରେନ ମଟର, ଡାକଘର ଓ ଥାନାଘର ଜଳିପୋଡ଼ି ହେଲା ଛାରଖାର ଏବଂ ସରକାରୀ ଖଜଣା ଖାନାରେ ଲୁଟତରାଜ ଚାଲିଲା ଘନ ଘନ । ସତେ ଯେପରି ଭିକ୍ଟର୍‌ହ୍ୟୁଗୋଙ୍କ ବର୍ଣ୍ଣିତ ଫରାସୀ ବିପ୍ଳବ ଧ୍ୱଂସଲୀଳା ତାର ଭାରତରେ ନେଲା ରୂପରେଖ ।

ମୋହିନୀ ବାବୁ ସବୁରେ ଓକିଲାତି କରୁଥିଲେ । ପର ଦୁଃଖରେ ସାନ୍ତ୍ୱନା ତାଙ୍କର ହୃଦୟ ବିଗଳିତ ହୁଏ । ଅନ୍ୟାୟର ପ୍ରତିରୋଧ କରିବାକୁ ସେ ମା ବାପ ହେଲେ ମଧ୍ୟ ସଂଘର୍ଷ କରିବାକୁ ସର୍ବଦା ତତ୍ପର । ତେଣୁ ଏ ଜାତୀୟ ଅହ୍ୱାନରେ ତାଙ୍କ ଭଳି ବ୍ୟକ୍ତି ଧୈର୍ଯ୍ୟ ଧରି ରହନ୍ତେ କେମନ୍ତେ ? ଉତ୍କଳର ସତ୍ୟାଗ୍ରହୀ ନେତାମାନଙ୍କ ସହ ସେ ମଧ୍ୟ କାରା ବରଣ କଲେ ।

ଶ୍ରୀମାନ ବିପିନ ବିହାରୀ ଏମ୍ ଏ ପାଶ କରି ସାରିଛନ୍ତି । କିନ୍ତୁ କଲେଜରେ ପଢୁଥିବା ସମୟରେ ସେ ଅନେକ ଥର ବିପ୍ଳବାତ୍ମକ

କଲ୍ପନାମାନ କେଉଁ କେଉଁ ଲୋକମାନଙ୍କ ଦେଉଥିଲେ । ସୁତରାଂ ସରକାର ସ୍ୱତନ୍ତ୍ର ପ୍ରତି କୌଣସି ଆସ୍ଥା ନ ରଖି ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ତାଙ୍କ କାର୍ଯ୍ୟ କେନ୍ଦ୍ରମାନ ପ୍ରଧାନତଃ ଥିଲା କଟକ, ଭୁବନେଶ୍ୱର ଓ ବାଲେଶ୍ୱର । ଭାରତ ତମାମ କଂଗ୍ରେସ, ସୋସାଲିଷ୍ଟ, ହିନ୍ଦୁ, ମୁସଲମାନ, ଜୈନ, ଖ୍ରୀଷ୍ଟିୟାନ ପ୍ରଭୃତି ସବୁ ସମ୍ପ୍ରଦାୟ ଯେତେବେଳେ ଜର୍ମାନୀ ବା ଜାପାନୀ ଆକ୍ରମଣ ବିରୁଦ୍ଧରେ ଅହିଂସ ଭାବରେ ସଂଗଠିତ ହେବାକୁ ଓ ଯୁଦ୍ଧରେ ନିରପେକ୍ଷ ରହିବାକୁ ପ୍ରସ୍ତୁତ, ସେତେବେଳେ କମ୍ୟୁନିଷ୍ଟମାନେ ଇଂରେଜ ସରକାରଙ୍କ ଯୁଦ୍ଧରେ ସହଯୋଗ କରୁଥିଲେ । କପିଳ ବାବୁଙ୍କର ତାହା ଇଚ୍ଛା କରୁଣ ହେଲେ ମଧ୍ୟ ପାର୍ଟିର ଅନୁମାନୁବର୍ତ୍ତୀ ହେବାକୁ ସେ ବାଧ୍ୟ । ଅପରୁ କେତେକ ହିଂସ୍ର ସ୍ୱଭାବ କାଣ୍ଡ ପାଇଁ ଅନେକ କମ୍ୟୁନିଷ୍ଟ କର୍ମୀ ଏବେ କେତେ ଜଙ୍ଗଲରେ ମଧ୍ୟ ଅଜ୍ଞାତବାସ କରୁଥାନ୍ତି । ବିଶେଷତଃ ଏମାନଙ୍କର ଆଡ୍ଡା ହରିଜନ ବସ୍ତି, ଆଦିବାସୀ ବା କୃଷି ମୂଲିଆଙ୍କ ବାସ ଗୃହର ଅଭ୍ୟନ୍ତରରେ । କମାଣ୍ଡା ଥାନାରେ ଗୋଟିଏ ନରହତ୍ୟା ଅପରାଧରେ ଅଭିଯୁକ୍ତ ହୋଇ କପିଳ ବାବୁଙ୍କ ନାମରେ ଓ୍ୱାରେଣ୍ଟ ବାହାରି ବହୁ ଅନୁସନ୍ଧାନ ହେଉଥାଏ ।

ଶ୍ୟାମସୁନ୍ଦର ମିଶ୍ରଙ୍କ ଓକିଲ ଧରଣୀଧର ବାବୁ ଓ ମିଶ୍ରଙ୍କର ଦେଓ୍ୱାନ ମଧ୍ୟ ମଞ୍ଜୁଳାଙ୍କ କାଶମୀ ଅପହରଣ ଅପରାଧରେ କପିଳ ଓ ପ୍ରେମଲତାଙ୍କୁ କଠିନ ଅଭିଯୁକ୍ତ କରାଇ ଦୋଷୀ ବୋଲି ପ୍ରମାଣ କରାଇବାକୁ ପ୍ରାଣ ପଣେ ଚେଷ୍ଟା ଚଳାଇଛନ୍ତି । ଧନରେ ସବୁ ସମ୍ଭବ ହୁଏ ! ଶ୍ୟାମସୁନ୍ଦର ମିଶ୍ର କେଉଁ ହାକିମରେ ରହିବା ଦିନଠାରୁ ଓକିଲ, ମୁକ୍ତାର, ମୋହରିର, ପୁଲିସ, ଡାକ୍ତର, ସାକ୍ଷୀଗୁଡ଼ା ଆଦି ଲୁଟି ଲୁଟା ନେବାରେ ଯେତେ ଟଙ୍କା ଖର୍ଚ୍ଚ ହେଲାଣି ତାର ଦୁଇ ଗୁଣ ବା ତିନିଗୁଣ ଟଙ୍କା ସ୍ୱୟଂ ଦେଓ୍ୱାନ, ମଞ୍ଜୁଳାଙ୍କ ପ୍ରେମ ବଜାର କରି ଘର ଭିତରେ ହାଣ୍ଡି ହାଣ୍ଡି ଭରି ମାଟିତଳେ ପୋତି ସାରିଲେଣି । କିନ୍ତୁ ମୁଖାବଧଙ୍କର ବୃଦ୍ଧି ବାରେ ମାଲୁଇଙ୍କୁ ଅଧେ ବାଡ଼ି ସହ ଆଉ ଅଧିକ ଉପରେ ଆକ୍ରମଣ ହୋଇଲାଣି ।

ଏ କେମନ୍ତ କଥା ? ଆପଣମାନେ କଣ ଫକ୍ଲେ, କନ୍ଧାଡ଼େକେ ଜାଣୁଁ ? ମଧୁ ମହାପାତ୍ରଙ୍କ ପରି ନମକହରମ୍ଭା କେର୍ତ୍ତ୍ୟାନ ଥାଉ ଥାଉ ଏତେ ବଡ଼ ନାମଜାଦା ମହାଜନଙ୍କୁ କଏଦୀ ଖଟାଉଥିଲେ ! ରାମ, ରାମ ରାମ ! ତାଙ୍କୁ ବଧିର ଏହା ସହିବ ! ଯାହା ହେଉ ଏପରି ଜଣେ କୌଶଳୀ କେର୍ତ୍ତ୍ୟାନ ନ ଥିଲେ ଓଭର୍ ଓ ପୁଲିସକୁ ସୁମର ବତାନ୍ତା କିଏ ? ପୁଲିସ ତାଙ୍କରି ଠାରୁ ଜାଣି ବିପିନ ବାବୁଙ୍କ ଝେର ପାଇବାକୁ ଚନ୍ଦକା ଜଙ୍ଗଲର ଠିକାଦାରଙ୍କ ଘର ଉପରେ ଚଢାଉ କରିଛନ୍ତି ।

ପୋଲିସ ଇନ୍‌ସ୍ପେକ୍ଟର ଆଗରେ ଓ ତାଙ୍କ ପଛକୁ ଜଣେ ସବ୍‌ଇନ୍‌ସ୍ପେକ୍ଟର, ଉଭୟଙ୍କ ପାଖରେ ଗୁଳି ଭର୍ତ୍ତି ଥିବା ରିଭଲଭର୍ ଓ ପୋଲିସମାନଙ୍କ ନିକଟରେ ବନ୍ଧୁକ ଓ ବେୟନେଟ—ଏହିପରି ଗୋଟିଏ ଫଉଜ ଆସି ପହଞ୍ଚିଗଲେ ଗୋଟିଏ ଘର ସାମନାରେ ଜଗି ରହିଥିବା ଜଣେ ବନ୍ଧୁକଧାରୀ ଜଗୁଆଳ ଆଗରେ । ଇନ୍‌ସପେକ୍ଟର ସଦାନନ୍ଦ ବାବୁ ପ୍ରଶ୍ନ କଲେ, "କାହାଘର ଏ, ପହରୀ ?" ଉତ୍ତର ହେଲା ଗୋଟିଏ ସାଲ୍ୟୁଟ୍ ସହ "ଠିକାଦାର ମାଧବ ସେନାପତି ।" ଇନ୍‌ସପେକ୍ଟର ଆଦେଶ ଦେଲେ, "ତୁମ ମାଲିକଙ୍କୁ ଡାକ ।" ପହରୀବାଲା ଘର ଭିତରକୁ ଯାଇ ଖବର ଦେବାରୁ ଠିକାଦାର ଘରୁ ବାହାରି ଜଲଦ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ କରି ନମସ୍ତେ କଲେ । ଇନ୍‌ସପେକ୍ଟର ହୁକୁମ କଲେ, "ଶୁଣ, ତମ ଘରେ କମ୍ୟୁନିଷ୍ଟ ବିପିନ ବେହେରା ମହାନ୍ତି, ଜଣେ ଆତତାୟୀ ଲୁଚି ରହିଛି । ତାର ଖୋଜ ପାଇଁ ମୁଁ ଆରେଷ୍ଟ କରିବାକୁ ଆସିଛି ।" ସମସ୍ତେ ଦୁଷ୍ ଦୁଷ୍ ଭିତରକୁ ପଶିଗଲେ । ଠିକାଦାର ଦୌଡ଼ି ଯାଇ ବାସନ୍ତୀ ଥିବା କୋଠରୀ ଦ୍ୱାର, "ଜନାନା ଘର" ବୋଲି ଆଉଜାଇ ଅଣିବାକୁ ଉଦ୍ୟତ ହୁଅନ୍ତେ, ଇନ୍‌ସପେକ୍ଟର କୌତୁହଳ ହୋଇ ସେହି ଘରେ ପ୍ରବେଶ କରିବାକୁ ଚେଷ୍ଟାକଲେ । ବାସନ୍ତୀ ଶୋଇଥିଲା, ଧଡ଼ାସ୍ କରି ଉଠି ଦେଖେତ ପୋଲିସ । ତାର ମନରେ ଗୋଟାଏ ଆନନ୍ଦ ଖେଳିଗଲା । ସେ କହିଲା, "ହଜୁର, ମୋତେ ଖୋଜିବାକୁ ଆସିଛନ୍ତି ? ମୋତେ ଏ ରାକ୍ଷସ କେଦ-

ମାସ ହେଲା, ଲୁହର ରସିଦ ଏଠାରେ, ମୋତେ ନେଇ ଯାଆନ୍ତୁ, ହଜୁର । ଆପଣ ମୃତ୍ୟୁଦାତା ।” ଇନ୍ସପେକ୍ଟର ସର୍ବଶେଷ ବୃତ୍ତାନ୍ତ ତାହାଠାରୁ ବୁଝିନେଲେ । ଠିକାଦାରଙ୍କୁ ହାତକଡ଼ି ପଡ଼ାଇ ଓ ଅଣ୍ଟାରେ ଦଉଡ଼ି ଲଗାଇ ଚାଲାଣ କରିବାକୁ ପୁଲିସମାନଙ୍କୁ ହୁକୁମ ଦେଇ ସଦାନନ୍ଦ ବାବୁ ଆଗେ ଆଗେ ଚାଲିଲେ । ବାସନ୍ତୀ ସେମାନଙ୍କ ପଛେ ପଛେ ଗଲା । ରାସ୍ତା ଉପର ମୋଟରରେ ସମସ୍ତେ ବସିବାରୁ ଡ୍ରାଇଭର ପୁରୀ ଆଡ଼କୁ ମୋଟର ଚଳାଇଲା । ଯାହାହେଉ “ଆଳୁ ଖୋଜୁ ଖୋଜୁ ମହାଦେବ ବାହାରିଲେ ।” ଜନୈକ କମ୍ୟୁନିଷ୍ଟ ବିପିନ ବାବୁଙ୍କର ପଛ ଲଗାଇବାପାଇଁ ଦୈର୍ଘ୍ୟାନ୍ ମଧୁମଲ୍ଲାପାଣ୍ଡଙ୍କର ସଙ୍କେତ ବହରରେ ନକ୍ସାଲ ଅମୂଳକ ନୁହେଁ । ସେ ଜାଣିଥିଲେ ତନ୍ଦଦା, ଭୁବନେଶ୍ୱର ତ କମ୍ୟୁନିଷ୍ଟମାନଙ୍କ ଧ୍ୱଂସାତ୍ମକ କାର୍ଯ୍ୟର ଷଡ଼ଯନ୍ତ୍ର, ହାତବୋମା, ଛୁରୀ, ବନ୍ଧୁକ, ଗୁଳାଗୁଣ୍ଠ ଲୁଟର କାରଖାନା ଏବଂ ରେଳଲାଇନ୍ ନଷ୍ଟପୋଷ, ଟେଲିଗ୍ରାଫ ତାର ପ୍ରଭୃତି ଚୋରମାର କରିବାର ନାନା ଯନ୍ତ୍ର ପାତ୍ରମାନଙ୍କର ଗୁପ୍ତାଗାର ହୋଇଛି । ବୋଧହୁଏ ଯହିଁ ବାସନ୍ତୀ ତହିଁ ବିପିନ । ଏହି ପ୍ରେମ-ବନ୍ଧନ ଦୃଷ୍ଟି କୋଣରୁ ଅନୁମାନଟା ସଫଳ ହେବବୋଲି ଭାବିବା ମଧ୍ୟ ସମ୍ପୂର୍ଣ୍ଣ ଅଳୀକ ନୁହେଁ । ଯେ ଅନ୍ୟ ପାଇଁ ଖାଲ ଖୋଳିଥାଏ, ସେ ସେହି ଖାଲରେ ପଡ଼େ ।

ଇନ୍ସପେକ୍ଟର ସଦଳବଳ ପୁରୀ ଥାନାକୁ ଗଲେ ଓ ମଧୁ ମଲ୍ଲାପାଣ୍ଡଙ୍କୁ ଗିରଫ କରିବାକୁ ପରୱାନା ଦେଇ ଜଣେ ସବଇନ୍ସପେକ୍ଟରଙ୍କୁ ଆଦେଶ ଦେଲେ ।



# ଅଷ୍ଟମ ପରିଚ୍ଛେଦ

ପୃଥିବୀ ପ୍ରସିଦ୍ଧ ଭାରତୀୟ ବିପ୍ଳବ ସନ ୧୯୪୨ ସାଲରେ ଯେଉଁ ରୂପରେଖ ନେଲା, ତାହା କ୍ଷଣିକ ଉନ୍ମାଦନାରୁ ସମ୍ଭବ ହୋଇ ନଥିଲା । ଶାନ୍ତ-ମୁକ୍ତ-ପ୍ରଶସ୍ତର ଜାତୀୟ ପତାକା ତଳେ ମହାତ୍ମା ଗାନ୍ଧୀଙ୍କ ଅଧି-ନାୟକତ୍ୱରେ ଜାତିଧର୍ମ ନିର୍ବିଶେଷରେ ଭାରତର ସାର ସନ୍ତାନଗଣଙ୍କୁ ଏକତ୍ରୀଭୂତ କରାଇଥିଲା,—୧୯୧୯ ଖ୍ରୀଷ୍ଟାବ୍ଦର ରଉଲେଟ୍ ଆକ୍ଟ ଓ ପଞ୍ଜାବ ଅତ୍ୟାଚାରର ଯଥାର୍ଥ ଉତ୍ତର, ସେହି ଅବ୍ୟର୍ଥ ଅସହଯୋଗ ଆନ୍ଦୋଳନ । ଭାରତ ବର୍ଷରେ ଗାନ୍ଧୀଙ୍କଭଳି ଜଣେ ଦୂରଦର୍ଶୀ ପ୍ରବୀଣ ବ୍ୟକ୍ତିଙ୍କ ଦ୍ୱାରା ଏହି ଆନ୍ଦୋଳନ ବୀଜ ଉପ୍ତ ହୋଇ ଅତ୍ୟାଚାରୀ ଇଂରେଜ ଶାସନର ଶୋଷଣ, ଦମନ, ଜାଲଜାଲିଆତି, ଜେଲ ଜୋରିମାନା, ହତ୍ୟା ପ୍ରଭୃତି ବୀଭତ୍ସ କାଣ୍ଡଦ୍ୱାରା ପିଷ୍ଟ ନେତୃବୃନ୍ଦଙ୍କର ପରବର୍ତ୍ତୀ ଭାବରେ ଲକ୍ଷ ଲକ୍ଷ ରୂପକ ଜଳ ଏବଂ ସମର୍ଥନକାରୀ ଜନତାର ଉଷ୍ମତା ଲାଭକରି ଯେତେ-ବେଳେ ଅଙ୍କୁରିତ ହୋଇ ବୃକ୍ଷରେ ପରିଣତ ହେଲା ଏବଂ ଶାଖାପ୍ରଶାଖା ବିସ୍ତାରକରି ଭାରତବ୍ୟାପୀ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ବିପ୍ଳବ ଉତ୍ପାଦନ କଲା, ସେତିକିବେଳେ ବମ୍ବେର ଐତିହାସିକ କଂଗ୍ରେସ ଅଧିବେଶନରେ ବିଖ୍ୟାତ ଅଗଷ୍ଟ ପ୍ରସ୍ତାବ—ଭାରତ ଛାଡ଼ ଓ ଗଣ ଆନ୍ଦୋଳନ ଏକ ସ୍ୱରରେ ଗୃହୀତ ହୋଇଗଲା । ସେନାପତିଙ୍କର ସୂକ୍ଷ୍ମ ଡାକରାରେ ବ୍ରିଟିଶ-ସାମ୍ରାଜ୍ୟବାଦକୁ ଲୋପକରି ଭାରତର ସାମ୍ପ୍ରଦାୟିକ ଐକ୍ୟ ଓ ସଂସ୍କୃତିକୁ ଦୃଢ଼ କରିବା ପାଇଁ କୋଟି କୋଟି ଦରିଦ୍ର ସର୍ବହରାର ମାରଫତଦାର ସ୍ୱଜନ୍ୟ ମଣ୍ଡଳୀ, ଯୋ ହୁକୁମବାଲା ଜମିଦାର ଶ୍ରେଣୀ, ଧନୀ, ମଧ୍ୟବିତ୍ତ, କୃଷୀ, ମୂଲିଆ, କର୍ମଚାରୀ, ଶିକ୍ଷକ ଓ ଛାତ୍ର ସମସ୍ତେ ବଦ୍ଧ ପରିକର । ମାନନୀୟା ବମ୍ବେ ନଗରରେ ଅଗଷ୍ଟ ତା ୮ରିଖରେ ମହାତ୍ମା ଗାନ୍ଧୀ ଓ ସର୍ଦ୍ଦାର ପଟେଲଙ୍କ ମୁଖରୁ ଶେଷ ଅଗ୍ନିବର୍ଷୀ ବକ୍ତୃତା ବାହାରି ଶ୍ରୋତୃବର୍ଗଙ୍କୁ ଉତ୍ତେଜିତ କରି ପକାଇ ଥିଲା । ସ୍ୱତନ୍ତ୍ର ଆଜାଦ୍ ଓ ପଣ୍ଡିତ ଜବାହାରଲାଲ ସେମାନଙ୍କ ସହ ଯେଉଁ ଅଜ୍ଞାତ କାରାଗାରକୁ ଚାଲିଗଲେ । ସେତେବେଳେ ହଜାର ହଜାର

ଛାତ୍ରଛାତ୍ରୀ ସ୍କୁଲ କଲେଜ ଛାଡ଼ି ବହୁତ ଶୋଭାଯାତ୍ରାରେ ବିକ୍ଷୋଭ ପ୍ରଦର୍ଶନ କରି ଇଂରେଜ ସରକାରର ଲାଠି, ଗୁଳି ଓ ସଙ୍ଗୀନ ମୁନରେ ଜୀବନ ବଳିଦେଇ ସେମାନଙ୍କର ସ୍ପୃହା ନେତାଗଣଙ୍କୁ ଫେଗ୍ରଭ ଦେବାପାଇଁ ବାଟ ଉପସ୍ଥାପିତ କଲେ ।

ଏହି ସମ୍ବାଦ ପ୍ରକାଶରେ ଛାତ୍ରଛାତ୍ରୀଙ୍କ ମସ୍ତକରେ ବଜ୍ରପାତ ହେଲା । ମାସମାସ ଧରି ସ୍କୁଲ କଲେଜ ସବୁ ବନ୍ଦ ରହିଲା । ସ୍ୱେଚ୍ଛାସେବୀ ଅମଳ ଚାଲ ଚଳୁଛରେ, ନିର୍ମମ ଅତ୍ୟାଚାର ଓ ଦମନ ଲୀଳା ଚଳୁଛରେ । ସ୍ୱରାଜ ଜାତିର ରକ୍ତ ଶୋଷଣ ବନ୍ଦ କରିବାରେ ସଂଗ୍ରାମ କରି ଛାତ୍ର ନେତା ବସ୍ତେଦା ଷ୍ଟେସନ ଠାରେ ଯେପରି ଅପୂର୍ବ, ଅମିତତେଜରେ ଓ ହସ ହସ ମୁହଁରେ ପୋଲିସର ଅତି ନୀଚ, ଘୃଣ୍ୟ ଓ ଲଜ୍ଜାଜନକ ଗୁଳି ଆଗରେ ଛାତି ଦେଖାଇ ଦେଇଥିଲେ, ସେପରି ଲୋମହର୍ଷଣକାରୀ ଦୃଶ୍ୟ, ଯେ କୌଣସି ସ୍ୱରାଜପ୍ରେମୀଙ୍କୁ ଉନ୍ମତ୍ତ କରିଦେବ । କଳ କାରଖାନାର ଶ୍ରମିକମାନେ ଧର୍ମଘଟ କଲେ ଓ ବର୍ଦ୍ଦୋଲିର କୃଷକମାନେ ସର୍ଦ୍ଦାର ପଟେଲଙ୍କ କୃଷକ ଆନ୍ଦୋଳନକୁ ପୁନଶ୍ଚ ସ୍ମୃତିପଟକୁ ଫେରି ଆସି-ଥିଲେ । ଗ୍ରାମବାସୀମାନଙ୍କ ଉପରେ ହେଉଥିବା ସମୂହ ଜୋରିମାନାର ପ୍ରତିକ୍ରିୟା ଦେଖା ଦେଲା, ଅହମଦାବାଦର ବୁଲବୁଲ କୋଠା ରେଲ ଷ୍ଟେସନ ଓ ରାଜଘାଟ ଟ୍ରେନର ଅଗ୍ନି ମହୋତ୍ସବରେ । ହରେସ୍, ଓ ତାଡ଼ବଙ୍ଗଳା ପୋଡ଼ାପୋଡ଼ି, ରେଲଲାଇନ ଓ ଟେଲିଗ୍ରାଫ ତାରକଟା ଏବଂ ତାହାର ଭୂତପୂର୍ବର ପ୍ରତି'ଉତ୍ତର ଦେଲା ସରକାରର ଗୋଳା ଗୁଳି ବର୍ଷଣ ।

ସତାରର ବନ୍ଦ୍ୟା ନାନା ପାଟିଲ ନେତୃତ୍ୱ ନେଇ ଯେଉଁ ସ୍ୱଦେଶ-ବତ୍ସଳତା ପ୍ରଦର୍ଶନ କରିଥିଲେ ତାର ଅମର କାହାଣୀ ଇତିହାସ ପୃଷ୍ଠା-ତାଳକୁ ଗାଇ ଚାଲିବ । କର୍ଣ୍ଣାଟକର ସତାରା ରେଲଷ୍ଟେସନ ପୋଡ଼ି ଭସ୍ମ କରାଗଲା । କେତେକ ସରକାରୀ ଥାନା ଗୋଲ୍ଲା, ତାଡ଼ବଙ୍ଗଳା ଓ ହରେସ୍ ପୁଡ଼ା ବାଦ ପଡ଼ିଲେ ନାହିଁ ।

ଆସାମରେ ନେତା, କର୍ମୀ ଓ ଛାତ୍ରମାନଙ୍କର ଗ୍ରେପ୍ତାର, ଘର ଖାନତଲାସ, କଂଗ୍ରେସ ପାର୍ଟି କଚେରୀ, ଜେଲ ଜୋରିମାନା ବଡ଼ ଜୋର ସୋରରେ ଚାଲିଥାଏ । କିନ୍ତୁ କି ସାହସ ସେ ଗ୍ରାମବାସୀ ମାନଙ୍କର ! ଗଢ଼ାଗଲା ଗ୍ରାମ ପଞ୍ଚାଏତ, ଚାଲିଲା ବାଦ, ବିବାଦ ଓ ବିସମ୍ବାଦର ମୁକ୍ତି-ଯୁକ୍ତ ବିଚାର । ଘର ଓ ହାଟ ନିଲାମ କରିଯାଇ ରାଜସ୍ୱ ଅଦାଏ ହେଲା । ଧାନ ଚାଉଳ, ଗାଈଗୋରୁ, ପନିପରିବା ଆଦି ସୁଦ୍ଧା ଗ୍ରାମ ମାନଙ୍କରୁ ବାହାରକୁ ଯିବାର କୌଣସି ଉପାୟ ରହିଲା ନାହିଁ ।

ଲକ୍ଷ୍ନୌ ଓ ଅଲ୍ଲାହାବାଦରେ ଯେତେ ଯେତେ ବିପ୍ଳବ ଶୋଭାଯାତ୍ରା ହୋଇଥିଲା, ସେଥିରେ ପ୍ରଥମେ ଗୁଳିସ୍ୱେଟରେ ପ୍ରାଣଦାନ କଲେ ସେହି ଐତିହାସିକ ବୀରନାରୀ ରାଣୀ ଦୁର୍ଗାବତୀ, ଅହଲ୍ୟା ବାଈ, ଝାନସୀର ରାଣୀ ଲକ୍ଷ୍ମୀ ବାଈ ଓ ପଦ୍ମିନୀ ଆଦିଙ୍କର ବୀରକନ୍ୟା ଛାତ୍ରୀବୃନ୍ଦ । ଐତିହାସିକ ବାଲିଆ ପ୍ରତିଷ୍ଠା କଲେ ନିଜର ସରକାର । ଅଶେଷ ଦମନ ସତ୍ତ୍ୱେ ବାଲିଆବାସୀ ଅନେକ ଦିନ ପର୍ଯ୍ୟନ୍ତ ନ ଛାଡ଼ିଲେ କଚେରୀ, ଡାକଘର ଥାନା ଓ ଡାକ୍ତର ଖାନାର ଦଖଲ । ମାତ୍ର ସୈନ୍ୟ ଫଉଜର ଅମାନୁଷିକ ଧ୍ୱଂସଲୀଳା କରିଦେଲା ସହରର ରାସ୍ତା, ଘାଟ ବାଟ ଲାଲଲାଲ, ବିପ୍ଳବର ନେତା ଜଣେ ହେଲା ବନ୍ଧା ହସ୍ତୀର ପାଦରେ ଏବଂ ଲୋକମାନଙ୍କୁ ଆତଙ୍କିତ କରିବା ପାଇଁ ରାଜପଥରେ ଘୋଷାରି ଘୋଷାରି ନିଆ ଯାଇଥିଲା ତାର ପ୍ରାଣ । ଓଃ ! କି ପୈଶାଚିକ କଳ୍ପନା ! ସ୍ୱାର୍ଥାନ୍ଧ ପ୍ରତିଷ୍ଠିତ ରାଜଶକ୍ତିର ଏ ସବୁ ଥିଲା କି ଜଘନ୍ୟ ଗଣତାନ୍ତ୍ରିକ ନମୁନା !!!

ଅଲମୋରାର ଭୌଗୋଳିକ ପରିସ୍ଥିତି ଯାନ ବାହାନର ଚଳାଚଳ ପକ୍ଷେ କଷ୍ଟକର ଥିଲା । କାରଣ ପାହାଡ଼ିଆ ଅଞ୍ଚଳରେ ଜାଲମୁକ୍ତ ରାସ୍ତାର ଅଭାବ । ଦୁର୍ଦ୍ଧର୍ଷ ସହରବାସୀ ଆପଣା ଛାଏଁ କଲେ ସରକାରୀ ଖଜଣା ବନ୍ଦ । ଜଙ୍ଗଲ ଆଇନ ଅମାନ୍ୟ ଆନ୍ଦୋଳନ ଚାଲିଲା । ଏପଟେ କି ସରଯୂ-ନଦୀ ତଟସ୍ଥ ଗଣେଶ୍ୱରରେ ବ୍ରିଟିଶ ଶକ୍ତି ଲୋପ ପାଇବାକୁ ବସିଲା । ବ୍ରିଟିଶ ସୈନ୍ୟ ବନ୍ଧୁକ ଧରିଲେ ବି, ଡାକିଲେ ଫସଲ ନେବାକୁ

ଖଜଣା ସ୍ୱରୂପ । କିନ୍ତୁ ପ୍ରତିରୋଧ କରୁଥିଲେ କୃଷକଗଣ ହରାଇ ପ୍ରାଣ ସୈନ୍ୟ ମାନଙ୍କର ନୃଶଂସ ଆକ୍ରମଣରେ । ଶ୍ରୀଯୁକ୍ତ ଉ. ଏନ. ପାଣ୍ଡେ ଓ ଏମ୍: ଉପାଧ୍ୟାୟଙ୍କ ନିର୍ଦ୍ଦେଶରେ "ଭାରତ ଛାଡ଼" ଆନ୍ଦୋଳନ ପ୍ରବର୍ତ୍ତିତ ହେଲା ଲୋକଙ୍କ ମଧ୍ୟରେ । ଫଳ ସ୍ୱରୂପରେ ସାଲେମର ଗ୍ରାମମାନଙ୍କରେ ସୈନ୍ୟ-ବାହିନୀର ସ୍ତ୍ରୀ ମାନଙ୍କ ଉପରେ ଯେଉଁ ପାଶବିକ ଅତ୍ୟାଚାର ଚାଲିଲା, ଗାଁ ଗାଁରେ ଘରେ ଘରେ ଯେଉଁ ଲୁଣ୍ଠତରାଜ ହେଲା ଓ ପୁରୁଷମାନଙ୍କୁ ଯେପରି ନିଷ୍ଠୁର ପ୍ରହାର କରାଗଲା, ସ୍ୱର୍ଗର ଦେବତା ମଧ୍ୟ ସେଥିର-ଦେଖିବାକୁ ବା ଶୁଣିବାକୁ ଡରିରେ ପ୍ରମାଦ ଗଣିବେ । ଧନ ସମ୍ପତ୍ତି ନିଲାମ କରାଗଲା । କିନ୍ତୁ ନିଲାମ ଧରିବ କିଏ ?

ଏହି ଅଗଷ୍ଟ ବିପ୍ଳବରେ ଅଗ୍ନି ଡମ୍ବୁରୁ ନେଇଥିଲା ପ୍ରଧାନ ଭାଗ । ମଧ୍ୟ ପ୍ରଦେଶରେ ଅଗ୍ନି ଡମ୍ବୁରୁ ବାସ୍ତବିକ ଭାରତର ଜାତୀୟ ତୀର୍ଥ । ବୃଟିଶ ଜାତିର ଅଶ୍ରୁତପୂର୍ବ ଜଘନ୍ୟ ଶାସନର ନମୁନା ଓ ନାରକୀୟ ଦମନ ନୀତିର ଶୀର୍ଷତମ ଦୃଷ୍ଟାନ୍ତ ଦୃଷ୍ଟିଗୋଚର ଓ ଶ୍ରୁତିଗୋଚର ହେବାକୁ ମିଳିଲା ଏହି ନରମେଧ ଯଜ୍ଞରେ । ସେ ବୀଭତ୍ସ ଦୃଶ୍ୟର କାହାଣୀ ବର୍ଣ୍ଣନ ସଭ୍ୟ, ଅସଭ୍ୟ ପ୍ରତ୍ୟେକ ମାନବ ଶୁଣିବା ମାତ୍ରେ ଇଂରେଜ ସଭ୍ୟତାର ନାମ ଉଚ୍ଚାରଣ କଲେ ଜିହ୍ୱା କଳଙ୍କିତ ହେବ ବୋଲି ସ୍ୱତଃ ମୁହଁରେ ହାତଦେଇ ଦେବେ । ଅଧ୍ୟାପକ ଭାନସାଲିଙ୍କର ୬୩ ଦିନ ଅନଶନ ଫଳରେ ଭାରତବାସୀ ତଥା ଭାରତ ସରକାର ବିଚଳିତ ହୋଇ ଡାଃ ମୁଞ୍ଜେ ଓ ଶ୍ରୀଯୁକ୍ତ ଆଣେଙ୍କୁ ଘଟଣା ତଦନ୍ତ କରି ରିପୋର୍ଟ ଦେବାକୁ ନିର୍ଦ୍ଦେଶ ଦେଲେ । ସେହି ରିପୋର୍ଟ—ସାଗର ଜଳରୁ ବିନ୍ଦୁଏ ମାତ୍ର ଏଠାରେ ଉଲ୍ଲେଖ କରାଗଲା । ପାଞ୍ଚଶତ ହିନ୍ଦୁ ମୁସଲମାନ ଏକତ୍ରିତ ହୋଇ ସ୍ୱାମଟେକ ଷ୍ଟେସନ, ଡାକଘର ଓ ତହସିଲ ଅଫିସ ଆକ୍ରମଣ କରି ଗୃହାଦିକୁ ଅଗ୍ନି ନଷ୍ଟ କରିଦେଲେ, ରେଳଗାଡ଼ିରୁ ଯାତ୍ରୀମାନଙ୍କୁ ବାହାର କରି ଦିଆଯାଇ ଦୁଇ ଜଣଙ୍କୁ ଜୀଅନ୍ତା ପୋଡ଼ି ଜାଳି ଦିଆଗଲା. ଖଜଣାଖାନା ଲୁଟ୍ ହେଲା ଓ ଏହି ଧ୍ୱଂସାତ୍ମକ ବିପ୍ଳବକୁ ଦମନ କରିବାପାଇଁ ଶୀଘ୍ର ବେଗରେ ଛୁଟି ଆସିଲେ ମାହାର-

ସୈନ୍ୟ । ସୈନ୍ୟମାନଙ୍କର ଆକ୍ରମଣରେ ଉମ୍ଭେଲ ଗ୍ରାମ ଛାରଖାର ହୋଇ ଯାଇଥିଲା । ଗୃହର ଧନ, ଜନ, ଗୋପ, ଲକ୍ଷ୍ମୀ ସମସ୍ତେ ଧ୍ୱସ୍ତ-ବିଧ୍ୱସ୍ତ ହେଲେ । ଠାକୁର ଶାଳଗ୍ରାମ ଆଦି ପଦଦଳିତ ହେଲେ । ହସ୍ତପଦ ଶୃଙ୍ଖଳାବଦ୍ଧ ସ୍ୱାମୀମାନଙ୍କର ପ୍ରତ୍ୟକ୍ଷରେ ସ୍ତ୍ରୀମାନଙ୍କର ଇଜ୍ଜତ ନଷ୍ଟ ହେଉଥାଏ । ବାଳକ ବାଳିକା ଖାଦ୍ୟାଭାବରେ ହାହାକାର କରୁଥାନ୍ତି । ତମ୍ଲୁକ ହତ୍ୟାକାଣ୍ଡ ପୂର୍ବରୁ ରାସ୍ତାଉପରେ ମାଳ ମାଳ ଗଛ କାଟି ଗଦା କରା ହୋଇଥିଲା, ନଦୀ ଓ ରାସ୍ତାର ପୋଲଗୁଡ଼ିକ ଉଡ଼ାଇ ଦିଆଯାଇ ମୋଟର, ଟ୍ରକ ଓ ବସ୍ ଯିବା ଆସିବାରେ ବହୁ ବ୍ୟାଘାତ ଘଟା ହୋଇଥିଲା ।

ତମ୍ଲୁକ ଏସ. ଡି. ଓ, ତହସିଲଦାର, ପୋଲିସ ଇନ୍‌ସପେକ୍ଟର ଆଦି ଉତ୍ତେଜିତ ଜନତା ଦ୍ୱାରା ପ୍ରାଣ ହରାଇଲେ । ତେଣୁ ଏକଶହ ୫୦ ଲୋକଙ୍କୁ ଗିରଫ କରି ଅପ୍ରଶସ୍ତ ଜନାକୀର୍ଣ୍ଣ କୋଠରୀରେ ଜବରଦସ୍ତି ପୁରାଇ ବନ୍ଦ କରି ଦିଆଗଲା ଏବଂ ଦ୍ୱିତୀୟ ଅନ୍ଧକୂପହତ୍ୟାର ଆୟୋଜନ କରାଗଲା । ଶ୍ରୀମତୀ ବାଳା ପ୍ରମୁଖ ସତରଜଣ ସ୍ତ୍ରୀ ତଦନ୍ତ କମିଶନ ଆଗରେ ଯେଉଁ ସାକ୍ଷ୍ୟ ଦେଇଥିଲେ, ସେଥିରେ ଯେ କୌଣସି ଲୋକର କଲିଜା ଥରି ଉଠିବ । ଏକ ଏକ ସ୍ତ୍ରୀ ଉପରେ ଏକାଧିକ ଗୋରା ସୈନ୍ୟମାନଙ୍କର ପାଶବିକ ଅତ୍ୟାଚାର ଓ ତଦ୍‌ଜନିତ କାର୍ଯ୍ୟରେ କେତେକ ସ୍ତ୍ରୀ ମୂର୍ଚ୍ଛିତା ହୋଇଥିଲେ ବା ଯେଉଁ ହୃଦୟ-ବିଦାରକ ମୃତ୍ୟୁ ଲାଭ କରିଥିଲେ ତାହା ମାନବ ଇତିହାସରେ କ୍ୱାପି ଦୃଷ୍ଟିଗୋଚର ହୁଏନାହିଁ । ଗ୍ରାମର ପ୍ରେସିଡେଣ୍ଟଙ୍କ ସ୍ତ୍ରୀ ଗର୍ଭବତୀ ଥିବା ଅବସ୍ଥାରେ ତାଙ୍କ ପ୍ରତି ଯେଉଁ ଅମାନୁଷିକ ଅବୈଧ ଅତ୍ୟାଚାର କରା ଯାଇଥିଲା, ତାହା ଶୁଣିଲେ ପଥର ମଧ୍ୟ ତରଳି ଯିବ । ଦୁଇଶହ ଲୋକଙ୍କୁ ମାଡ୍ରାଜୀ ଓ ପଞ୍ଜାବୀ ସୈନ୍ୟ ସେହିଠାରେ ଖେଦମାଛ ପରି ଗୁଳିକରି ମାରି ଦେଇଥିଲେ ।

କଲିକତାର ଛାତ୍ର ଶୋଭାଯାତ୍ରାରେ ଟିଅର-ଗ୍ୟାସ ପ୍ରୟୋଗ କରାଗଲା । କିନ୍ତୁ ଛାତ୍ରମାନେ ଅଟଳ ଓ ଦୃଢ଼ପ୍ରତିଜ୍ଞାବଦ୍ଧ । ତେଣୁ

ମେଦିନୀପୁରକୁ ଢ଼ିଢ଼ା ଢ଼ିଢ଼ା ଶବ୍ଦ ଅବସ୍ତ୍ରମ ଢଙ୍ଗରେ ଛୁଟିଲା। ବଲ୍ଲଭତା ଜାଗରୂକ ସ୍ତ୍ରୀ, ପୁରୁଷ ବାଳକ ବାଳିକା ବୃଦ୍ଧ ବୃଦ୍ଧା ସମସ୍ତେ ସ୍ୱ ସ୍ୱ ଗୃହ ମଧ୍ୟରେ ଆବଦ୍ଧ, ନିସ୍ତବ୍ଧ, ନିସ୍ପନ୍ଦ ଓ ପ୍ରତି ମୁହୂର୍ତ୍ତରେ ଜୀବନ ଆଶଙ୍କାରେ ବ୍ୟାକୁଳ ହୋଇ ପଡ଼ିଲେ। ବଜାର ସବୁ ମରୁଭୂମି ପରି ଦେଖାଗଲା। ଇଲେକ୍ଟ୍ରିକ ତାର କଟାହୋଇ ଟ୍ରାମ ବନ୍ଦ କରି ଦିଆଗଲା। ରାସ୍ତାରେ କାଠ, ପଥର, ଟେକା, ଗୋଡ଼, ଢୋଇଲ କୁଢ଼ କୁଢ଼ ହୋଇ ଜମା ହୋଇଥାଏ। ଛାତ୍ରମାନଙ୍କର ବିଲାତି ପୋଷାକ ପ୍ରତି ଘୃଣାଭାବ ଜାତ ହେଲା। ଯେ ଟୋପି, ଟାଇ, ଷ୍ଟାଣ୍ଡ, ସିଗାରେଟରେ ମଣ୍ଡିତ ହୋଇ ରାସ୍ତାଉପର ଦେଇ ଗଲା, ତା'ଉପରେ ପଥର, ଖଣ୍ଡିଆ ଯୋତା ଓ ସୋଡ଼ା ବୋତଲ ଫେ'ପଡ଼ା ହେବାର ଦେଖାଗଲା।

ସୂତାହାଟ, ନନ୍ଦୀଗ୍ରାମ ଓ ତମଲୁକରେ ଗୋଟିଏ ଗୋଟିଏ ଜାତୀୟ ସରକାର ଗଢ଼ାଯାଇ ଲଢ଼ୁଆ ବାହିନୀ, ଗୋଇନ୍ଦା ବାହିନୀ ଚିକିତ୍ସା ବାହିନୀ ଓ ମହିଳା ସୈନ୍ୟ ବାହିନୀମାନ ଖୋଲିଲା। ମାନ୍ଦ୍ରାଜର ଗୁଣ୍ଟୁର, ବେଜୱାଡ଼ା ପ୍ରଭୃତିର ବାସିନ୍ଦାମାନେ ପୁଲିସ ଓ ସୈନ୍ୟ ଗୁଳିରେ ଅସଂଖ୍ୟଭାବେ ହତାହତ ହେଲେ। ବିହାରର ପାଟନାଠାରେ ଡାକ୍ତର ରାଜେନ୍ଦ୍ର ପ୍ରସାଦ ଗିରଫ ହେବାରୁ ଜନତା ସେକ୍ରେଟାରିଏଟକୁ ଆକ୍ରମଣ କଲା। କିନ୍ତୁ ଗୋରା ସୈନ୍ୟଙ୍କର ଗୁଳିମାଡ଼ରେ କେତେ ମଲେ ଓ କେତେ ଆହତ ହେଲେ ତାହା ଜାଣିବାର ଅବକାଶ ରହିଗଲା ନାହିଁ। ରାସ୍ତାଘାଟ, ରେଲ ମୋଟର, ଇଲେକ୍ଟ୍ରିକ ଓ ଟେଲିଗ୍ରାଫ ତାର ସବୁ ଏପରି କ୍ଷତିଗ୍ରସ୍ତ ବା ବିପଦସଙ୍କୁଳ ହେଲା ଯେ, ତାକୁ ନବା ଆଣିବା ପାଇଁ କେବଳ ଉଡ଼ାଜାହାଜର ବ୍ୟବହାର ସମ୍ଭବ ହୋଇଥିଲା।

ସମଗ୍ର ଭାରତରେ ନାନା ସ୍ଥାନର ଅଗଷ୍ଟ ବିପ୍ଳବମାନଙ୍କ ସଙ୍ଗ-ଭାବକୁ ତାଳ ମିଳାଇ ରଖିବାପାଇଁ ବର୍ଣ୍ଣନାତୀତ ବୀର ଯୌବନ୍ତା ଶାର-

ବେଜଳଙ୍କର ଯୋଗ୍ୟ ବଂଶଧର ଉତ୍କଳୀୟ ଅବାଳବୃଦ୍ଧବନିତା, ଜାତି-ପିତା ମହାତ୍ମା ଗାନ୍ଧୀଙ୍କର ରଣଭେରୀର ଉନ୍ମାଦନାରେ ଛୁଟି ଆସିଲେ ଜାତୀୟ ରଣଭୂମିର ବଳିଦାନ ସ୍ଥଳକୁ । ଭାରତର ମୁକ୍ତି ଇତିହାସରେ ଉତ୍କଳର ସ୍ଥାନ ଅତୁଳନୀୟ । ଉତ୍କଳର ଛାତ୍ରଛାତ୍ରୀ, ଯୁବକ ଯୁବତୀ, ବୃଦ୍ଧ ବୃଦ୍ଧା, ବାଳକ ବାଳିକା ସମସ୍ତେ ଅଗଷ୍ଟ ବିପ୍ଳବରେ ଆତ୍ମତ୍ୟାଗର ଆଦର୍ଶ ଓ ଦେଶପ୍ରୀତିର ପ୍ରମାଣ ଦେବାକୁ ଉଦ୍‌ବିଗ୍ନ ହୋଇ ଉଠିଲେ । ଉତ୍କଳର ବିଶିଷ୍ଟ ନେତାଗଣ ଗ୍ରେପ୍ତାର ହୋଇ ଜେଲଖାନାରେ ଆବଦ୍ଧ ହେଲେ । ଅଗଷ୍ଟ ୧୪ ତାରିଖରେ ରେଭେନ୍‌ସା କଲେଜର ଛାତ୍ରମାନେ କଲେଜ ଦ୍ୱାରରେ ବିରାଟ ସଭା କରି ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ ଗୋଲାମୀରୁ ଇସ୍ତଫା ଦେବାକୁ ନିବେଦନ କଲେ । ଅଫିସର କାଗଜପତ୍ର ନିଆଁରେ ଭସ୍ମ ହୋଇ ଜଳୁଥାଏ । କମ୍ୟୁନିଷ୍ଟ ଛାତ୍ରସଙ୍ଘ ଓ ଜାତୀୟବାଦୀ ଛାତ୍ର କର୍ମୀମାନେ ଗିରଫ ହେଲେ । ଏହାପରେ ଓଡ଼ିଶାର ଗ୍ରାମେଗ୍ରାମେ ବିପ୍ଳବ ଖେଳିଗଲା । ବୀର କଂଗ୍ରେସ କର୍ମୀମାନେ ଖାଇପଡ଼ା ପୋଷ୍ଟ ଅଫିସର କାଗଜପତ୍ର ପୋଡ଼ିଦେବାରୁ ପୋଲିସ ଗୁଳି ଓ ସଙ୍ଗୀନ ମୁନରେ ଶ୍ରୀ ନୃ ମଲିକ ଓ ସାନନ୍ଦ ସ୍ୱାଇଁ ପ୍ରାଣ ହରାଇଲେ ଏବଂ ଅନେକ ଆହତ ହେଲେ । ବାଞ୍ଛାରପୁର ଅଞ୍ଚଳରେ ଗୋଟିଏ ଛଅବର୍ଷର ଝିଅ ମଧ୍ୟ ପୁଲିସ ଅତ୍ୟାଚାରରୁ ରକ୍ଷା ନପାଇ ନାଳରେ ବୁଡ଼ିମଲା । ବରି ଆଶ୍ରମର ଶ୍ରୀମତୀ ରମାଦେବୀ ପ୍ରମୁଖ ବାରଜଣ ମହିଳାକର୍ମୀ ଗିରଫ ହେଲେ । ଗ୍ରାମମାନଙ୍କରୁ ସମୂହ ଜୋରିମାନା ଯାହା ଆଦାୟ କରାଗଲା, ସେଥିରେ ଲୋକମାନେ କା ହତଭମ୍ବ ନ ହେବେ କାହିଁକି ? ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ନେତୃତ୍ୱରେ କେତେ ଛାତ୍ର, କେତେ ଶିକ୍ଷକ ହେଲେ ପୁର-ପଲ୍ଲୀରେ ଅଗଷ୍ଟ ବିପ୍ଳବର ପ୍ରଚାରକ । ସେପ୍‌ଟେମ୍ବର ମାସରେ ତିର୍ତ୍ତୋଲ, ନୂଆଡ଼ା କଳମର ଅଫିସ ପୋଡ଼ି, ଟେଲିଗ୍ରାଫ ତାର କାଟି ଦେବା, ଏରସମା ଥାନାରୁ ଜନତାର ଅସ୍ତ୍ରଶସ୍ତ୍ର ବାଜେୟାପ୍ତ କରିବା, ଜାଜପୁରର ନେତା ଶ୍ରୀ ପଦ୍ମନାଭ ସ୍ୱାଇଁଙ୍କ ନିର୍ଦ୍ଦେଶରେ ତିନିଶ ହଜାର ଲୋକ ଥାନା ଆକ୍ରମଣ କରି ଜନତାଙ୍କ ପ୍ରତିଷ୍ଠା କରିବା ଓ ବଡ଼ଚଣା ଥାନାରେ ଜମିଦାରଙ୍କର ଧାନଗୋଲାରୁ ଧାନ ବରଣ କରଣ କରି ଲୁଟିକରି

ଲୋକଙ୍କୁ ବନ୍ଧାଦେବା ପ୍ରଭୃତି ପୈଶାଚିକ ନଗ୍ନୀକରଣର ପରିଚୟ ଏଠି ବାଲେଶ୍ୱର ଜିଲ୍ଲାରେ ଇରମ ଥାନାର ଜନସାଧାରଣଙ୍କ ଉପରେ ହୋଇଥିବା ଅକଥନୀୟ ଅତ୍ୟାଚାର ଭାରତର ଯେ କୌଣସି ସ୍ଥାନର ଅତ୍ୟାଚାରଠାରୁ ନ୍ୟୂନ ନୁହେଁ । ଦୁର୍ଭିକ୍ଷ ପୀଡ଼ିତ କ୍ଷୁଧାର୍ତ୍ତ ଜନତା ଉଦର ଜ୍ୱାଳା ସମ୍ଭାଳି ନପାରି ଧନୀ ମହାଜନମାନଙ୍କ ଘରେ ପ୍ରବେଶ-କରି ଧାନ ବାଣ୍ଟି ବୁଣ୍ଟି ନେଇ ଖାଇଗଲେ ସତ, ମାତ୍ର ପୁଲିସର ଗୁଳିରେ ମଲେ ଅନେକେ ଓ ଆହତ ହେଲେ ଦୁଇଶହ । ଧାମନଗରରେ ଦଶ ମୃତ ଓ ଚାଳିଶ ଆହତ । ଖଇରାରେ ଦୁଇ ମୃତ ଓ କେତେ ଆହତ କହି ହେବନାହିଁ ।

କୋରାପୁଟ ଜିଲ୍ଲାର ବରିଷ୍ଠ କଂଗ୍ରେସ କର୍ମୀ ଶ୍ରୀ ରାଧାକୃଷ୍ଣ ବିଶ୍ୱାସ-ରାୟ ଗିରଫ ହେବା ପରେ ସହିଦ ଲକ୍ଷ୍ମଣ ନାଏକଙ୍କ ସଭାପତିତ୍ୱରେ ଦୁଇହଜାର ଲୋକଙ୍କ ସଭା ଉପରେ ଗୁଳିବର୍ଷଣ ହେବାରୁ ଛଅ ମୃତ ଓ ଏକଶତ ଆହତ ହେଲେ । ଲକ୍ଷ୍ମଣ ନାଏକଙ୍କୁ ମିଥ୍ୟା ନରହତ୍ୟା ଅପ-ରାଧରେ ବ୍ରହ୍ମପୁର ଜେଲରେ ଫାଶୀ ଦିଆଗଲା । ପଡ଼ିଆର ଲମତପୁଟ-ଠାରେ ପୁଲିସ ସାହେବ କଂଗ୍ରେସ କର୍ମୀମାନଙ୍କୁ ଉଲଙ୍ଗଳା କରି ଖଦଡ଼ ଛଡ଼ାଇ ନେଇ ପୋଡ଼ିପକାଇ ଥିଲେ । ନବରଙ୍ଗପୁର, ପପଡ଼ାହାଣ୍ଡି ରଣପୁର ଗାଁ ଗହଳମାନଙ୍କରେ ସ୍ତ୍ରୀମାନଙ୍କୁ ଉଲଙ୍ଗଳାକରି ସେମାନଙ୍କର ଇଜ୍ଜତ ନେବା ଦୃଶ୍ୟ ତତ୍କାଳୀନ ପୁଲିସମାନଙ୍କର ନୈତିକ ଚରିତ୍ରର ଗୁଣ ପ୍ରକାଶ କରେନାହିଁ କି ? କୋରାପୁଟ ଜେଲ ଭିତରେ ନିର୍ମମ ଅତ୍ୟାଚାରର ଶିକାରରେ ପଚାଶଜଣ ରାଜନୈତିକ ବନ୍ଦୀ ପ୍ରାଣ ହରାଇଥିଲେ । ସବୁଠାରୁ ବେଶୀ ଉପଦ୍ରବ ହୋଇଥିଲା ଲକ୍ଷ୍ମୀପୁର, ମାଥିଲି, ଓ ଦଶମନ୍ତପୁର ଥାନାରେ । ଥାନା ଆକ୍ରମଣ, ଡାକଲୁଣ୍ଠନ, ତାରକଟା, ରେଳପଥ ଧ୍ୱଂସ, ଖଜଣା ବନ୍ଦହେତୁ ପୁଲିସର ବ୍ୟାପକ ଗୁଳି ଚାଳ-ନାଇବା, ସ୍ତ୍ରୀଲୋକମାନଙ୍କ ଇଜ୍ଜତ ନେବା, ଲୁଟତରାଜ କରିବା ପ୍ରଭୃତି ନାନା ଦମନଲୀଳା ଚାଲିଲା ।

ଢେଙ୍କାନାଳର ବୀର ବୈଷ୍ଣବ ପଟ୍ଟନାୟକଙ୍କ ସେନାପତିତ୍ୱରେ ଫଉଜଙ୍ଗଠାରେ ସାମ୍ରାଜ୍ୟବାଦୀ ପୁଲିସ ସଙ୍ଗେ ସଶସ୍ତ୍ର ଲଢ଼େଇ

କରି ଦୁଇଘଣ୍ଟା କାଳ ସେମାନଙ୍କୁ କାବୁକରି ରଖିଥିଲେ । ତତ୍ପରେ କଟକରୁ ସୈନ୍ୟ ଫଉଜ ଆସି ବିପ୍ଳବୀମାନଙ୍କୁ ଆୟତ୍ତ କଲେ ସତ, କିନ୍ତୁ ଏପରି ଉଗ୍ର ଓ ସଶସ୍ତ୍ର ଯୁଦ୍ଧ ଭାରତରେ ଅନ୍ୟତ୍ର ଘଟି ନଥିଲା ।

ଶ୍ରୀମାନ ବିପିନ ବିହାରୀ ମହାନ୍ତି ଅନ୍ୟାନ୍ୟ କମ୍ୟୁନିଷ୍ଟଙ୍କ ପରି ଆତ୍ମ-ଗୋପନ କରି ବୁଲୁଥିଲେ । ସେତେବେଳେ କମ୍ୟୁନିଷ୍ଟମାନେ ସ୍ପଷ୍ଟ ଅଗଷ୍ଟ ବିପ୍ଳବରେ ସରକାରଙ୍କୁ ଜର୍ମାନୀ ବିପକ୍ଷରେ ଭାରତ ପକ୍ଷରୁ ଯୁଦ୍ଧ ଘୋଷଣାରେ ସମର୍ଥନ ଦେଇଥିବାରୁ ସେହି ଏକମାତ୍ର ରାଜନୈତିକ ଦଳ ଉପରୁ ସମସ୍ତ କଟକଣା ଉଠି ଯାଇଥିଲା । କିନ୍ତୁ ବିପିନ ବାବୁଙ୍କର ହୃଦ୍‌ବୋଧ ହେଲା, କମ୍ୟୁନିଷ୍ଟମାନଙ୍କର ମାତୃଭୂମି ପ୍ରତି ଏହା ପ୍ରତ୍ୟକ୍ଷ ବିଶ୍ୱାସଘାତକତା । ସେ ନିଜେ ଜନସାଧାରଣଙ୍କ ଚକ୍ଷୁରେ ଘୃଣିତ ହେବା ଆଶଙ୍କାରେ ଓ କମ୍ୟୁନିଷ୍ଟଙ୍କ ଦ୍ୱାରା ଗୁପ୍ତରେ ନିହତ ହେବା ଭୟରେ ଦେଶମାତୃକାର ସେବାପାଇଁ ଭାରତ ବାହାରେ ତାଙ୍କପାଇଁ ପ୍ରଶସ୍ତ କ୍ଷେତ୍ର ଅଛିବୋଲି ମନେକଲେ । ନେତାଜୀ ସୁଭାଷବୋଷ ଭାରତ ସରକାରଙ୍କର ପୁଲିସ ବିଭାଗ ଆଖିରେ ଧୂଳି ପକାଇଦେଇ ଭାରତରୁ ସହସା ଉଭେଇଯିବା କଥା ଜାଣି, ଉତ୍ସାହିତ ହୋଇଥିଲେ ସେ । ତେଣୁ ତାଙ୍କର ଇଚ୍ଛା ବଳବତୀ ହେଲା ତାଙ୍କର ପଦାଙ୍କ ଅନୁସରଣ କରିବାକୁ ।

ଦକ୍ଷିଣପୂର୍ବ ଏସିଆରେ ବାସ କରୁଥିବା ତିରିଶ ଲକ୍ଷ ଭାରତ-ବାସୀଙ୍କର ଭାରତରେ ବ୍ରିଟିଶ ଶାସନ ଲୋପ କରି ସ୍ୱାଧୀନତା ହାସଲ କରିବା ପାଇଁ ପ୍ରବଳ ଆକାଂକ୍ଷା ଜାଗି ଉଠିଲା । ସେହି ଇଚ୍ଛାରୁ ସବ ଶେଷରେ ଜନ୍ମ ହୋଇଥିଲା ଆଜାଦ ହିନ୍ଦ ଫଉଜକୁ । ଏହାର ଲକ୍ଷ୍ୟ ହେଲା ସଶସ୍ତ୍ର ସଂଗ୍ରାମରେ ଭାରତକୁ ବ୍ରିଟିଶ କବଳରୁ ମୁକ୍ତକରି ପୂର୍ଣ୍ଣ ସ୍ୱାଧୀନତା ହାସଲ କରିବା । ଇଂରେଜମାନେ ସିଙ୍ଗାପୁର, ମାଳୟ, ଓ ବର୍ମାରେ ଭାରତୀୟ ସୈନ୍ୟମାନଙ୍କୁ ଜାପାନୀମାନଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ବାଧ୍ୟ କରାଇ ନିଜେ ସୁବିଧା ଓ ସୁଯୋଗ ଉଣ୍ଡି ପଳାଇ ଆସିଲେ । ଏହି ବିଶ୍ୱାସଘାତକତା ଭାରତୀୟ ସୈନ୍ୟଙ୍କ

ହୃଦୟରେ ଅସନ୍ତୋଷ ଜନ୍ମାଇ ଥିଲା । ଜାପାନୀମାନେ ମଧ୍ୟ ଭାରତୀୟ ଯୁଦ୍ଧ ବନ୍ଦୀ ଓ ବେସାମରିକ ଭାରତୀୟଙ୍କର ଏହି ବୃଟିଶ ବିରୋଧୀ ଚିନ୍ତ ମନୋଭାବକୁ ନିଜ ମତଲବ ହାସଲ କରିବାରେ ଲଗାଇଲେ । ଭାରତର ନିର୍ବାସିତ ବନ୍ଦୀ ସନ୍ତାନ ଶ୍ରୀ ରାସ ବିହାରୀ ବୋଷଙ୍କ ନେତୃତ୍ୱରେ ୧୯୪୨ ସାଲ ମାର୍ଚ୍ଚ ମାସ ୨୮ ତାରିଖରେ ଟୋକିଓ ସହରରେ ଜାପାନ, ମାଲୟ, ଶ୍ୟାମ ଓ ଚୀନର ପ୍ରତିନିଧିମାନଙ୍କୁ ନେଇ ଗୋଟିଏ ସମ୍ମିଳନୀ ହେଲା । ଭାରତକୁ ବିଦେଶୀ ଶାସନରୁ ସମ୍ପୂର୍ଣ୍ଣ ଭାବରେ ମୁକ୍ତ କରି ସ୍ୱାଧୀନ କରିବା ପାଇଁ ଘୋଷଣା କରାଗଲା । ଆଜାଦ ହିନ୍ଦ ଫଉଜ ସେହି ସମ୍ମିଳନୀର ନିଷ୍ପତ୍ତି ଓ କୀର୍ତ୍ତି । ସ୍ୱାଧୀନ ସଙ୍ଘର ଶାଖାମାନ ମାଲୟ, ସିଙ୍ଗାପୁର ଓ ବର୍ମାରେ ଖୋଲାଗଲା । ସାର୍ ରାସ ବିହାରୀ ବୋଷ, ଶ୍ରୀ ରାଘବାନ୍, ଶ୍ରୀ କେ. ମେନନ୍ କ୍ୟାପଟେନ୍ ମୋହନ ସିଂହ ଓ କର୍ଣ୍ଣେଲ ଗିଲଙ୍କୁ ନେଇ ଗଠିତ ହେଲା ଏକ ଯୁଦ୍ଧ ପରିଷଦ । ସାମରିକ ଜନସାଧାରଣ ଓ ଯୁଦ୍ଧବନ୍ଦୀଙ୍କୁ ନେଇ ଗଠିତ ହେଲା ଆଜାଦ୍ ହିନ୍ଦ ଫଉଜ । ୧୯୪୩ ଏପ୍ରିଲ ମାସରେ ଶ୍ରୀ ସୁଭାଷଚନ୍ଦ୍ର ବୋଷ ବାର୍ଲିନରେ ଭାରତୀୟ ଯୁଦ୍ଧ ବନ୍ଦୀ ଓ ଭାରତୀୟ-ମାନଙ୍କୁ ନେଇ ୩୫୦୦ ସୈନିକଙ୍କର ଏକ ଆଜାଦ୍ ହିନ୍ଦ୍ ଫଉଜ ଗଢ଼ିଥାନ୍ତି । ତାଙ୍କର ନେତୃତ୍ୱରେ ଫ୍ରାନ୍ସ, ହୋଲାଣ୍ଡ ଓ ଲରେନସରେ ଇଂରେଜ ଓ ଅମେରିକା ସୈନ୍ୟଙ୍କ ସହ ତାଙ୍କର ସେନା ଯୁଦ୍ଧ କରୁଥାନ୍ତି । ସେହିବର୍ଷ ଜୁନ ମାସରେ ସେ ପୂର୍ବ ଏସିଆ-ବାସୀଙ୍କ ଆହ୍ୱାନରେ ଟୋକିଓକୁ ଆସିଲେ ଓ ଜୁଲାଇ ଦୁଇ ତାରିଖରେ ସିଙ୍ଗାପୁରରେ ପହଞ୍ଚିଲେ । ଜୁଲାଇ ତା ୫ ରିଖରେ ଶ୍ରୀଯୁକ୍ତ ସୁଭାଷଚନ୍ଦ୍ର ବୋଷଙ୍କର ଅଧିନାୟକତ୍ୱରେ ଆଜାଦ୍ ହିନ୍ଦ୍ ଫୌଜ ଗଠନ ବୃତ୍ତାନ୍ତ ପୃଥିବୀରେ ଘୋଷିତ ହେଲା । ଝାନ୍ସୀରାଣୀ ବାହିନୀ ଭାରତୀୟ ନାରୀଙ୍କୁ ନେଇ ଗଢ଼ା ହୋଇଥିଲା । ଏଥିରେ ପ୍ରାୟ ହଜାରେ ମହିଳାଙ୍କୁ ରୋଗୀ ଓ ଆହତଙ୍କର ସେବା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଯୁଦ୍ଧ ଶିକ୍ଷା ଦିଆ ଯାଉଥିଲା । ଡାକ୍ତର ଲକ୍ଷ୍ମୀ ଏହାର ସେନାନାୟିକା ଥିଲେ । ଶ୍ରୀ ବୋଷଙ୍କ ନେତୃତ୍ୱରେ ଅସ୍ଥାୟୀ ସ୍ୱାଧୀନ

ଭାରତ ସରକାର ଗଢ଼ାଗଲା । ସରକାର ପକ୍ଷରୁ ସୁଭାଷ ବୋଷ, କ୍ୟାପ୍‌ଟେନ୍‌ ଲକ୍ଷ୍ମୀ, ମେଜର ଜେନେରାଲ ସାନଓ୍ୱାଜ, ଲେଫ୍ଟେନାଣ୍ଟ କର୍ଣ୍ଣେଲ ଚଟର୍ଜି ଓ କ୍ୟାପଟେନ୍‌ ବିପିନ ବିହାରୀ ମହାନ୍ତି ପ୍ରମୁଖ ତୋଳଏଜଣ ମନ୍ତ୍ରୀ, ସେକ୍ରେଟାରୀ ଓ ପରାମର୍ଶ ଦାତାଙ୍କ ସ୍ୱାକ୍ଷରରେ ଏହି ଘୋଷଣା ପ୍ରକାଶ ପାଇଲା । ଜର୍ମାନୀ ପକ୍ଷର ନଅଗୋଟି ସରକାର ଏହାକୁ ସ୍ୱୀକାର କରିନେଲେ । ଜାପାନ ସହିତ ସ୍ୱତନ୍ତ୍ର ସନ୍ଧିରେ ଏହା ଆବଦ୍ଧ ରହିଲା । ଟୋକିଓ, ଫିଲିପାଇନ୍‌ ଓ ବର୍ମାରେ ରାଜଦୂତମାନେ ରହିଲେ । ଅଜାଦ୍‌ ହିନ୍ଦ୍‌ ବ୍ୟାଙ୍କରେ ଅଠ କୋଟି ଟଙ୍କା ଗଚ୍ଛିତ ଥିଲା ।

ଶ୍ରୀମାନ୍‌ ବିପିନ ବିହାରୀ ଗୋଟିଏ ଜାହାଜର ଖଲାସୀ ବେଶରେ କଲିକତା ବନ୍ଦରରୁ ଇଂରେଜ ଯୁଦ୍ଧ ଜାହାଜରେ ରେଙ୍ଗୁନ ଯାଇଥିଲେ ଓ ସେହିଠାରେ ସୁଯୋଗ ପାଇ, ଶ୍ରୀ ସୁଭାଷ ବୋଷ ସିଙ୍ଗାପୁରରେ ପହଞ୍ଚିଥିବା ପୂର୍ବରୁ ଅଜାଦ ହିନ୍ଦ୍‌ ଫୌଜରେ ଯୋଗ ଦେଇଥିଲେ । ୧୯୪୪ ମସିହା ଫେବୃୟାରୀରେ ଅଜାଦ ହିନ୍ଦ୍‌ ଫୌଜର ସାମରିକ କାର୍ଯ୍ୟ ଆରମ୍ଭ ହେଲା ଓ ମାର୍ଚ୍ଚ ଅଠ ତାରିଖରେ ସେମାନେ ଭାରତ ସୀମାନ୍ତ ଅତିକ୍ରମ କରି ଆକ୍ରମଣ ଆରମ୍ଭ କଲେ । ଏହି ଫୌଜର ସୁଭାଷ ବାହିନୀ, ଗାନ୍ଧି ବାହିନୀ, ନେହେରୁ ବାହିନୀ ଓ ଅଜାଦ ବାହିନୀ ଲଢ଼େଇରେ ପ୍ରବୃତ୍ତ ଥିଲେ । ମେଜର ଜେନାରାଲ ସାନଓ୍ୱାଜଙ୍କ ସେନାପତିତ୍ୱରେ ସୁଭାଷ ବାହିନୀ ମୋରାଇ ପ୍ରଭୃତି ଦଖଲ କରି ଇମ୍ଫାଲକୁ ଘେରି ଯାଇଥିଲେ । କିନ୍ତୁ ଉଡ଼ାଜାହାଜର ଅଭାବରୁ ଜନପଦ ନ ମିଳିବା ଓ ବର୍ଷା ହେତୁ ଏହି ଫୌଜ ପଛକୁ ହଟିଥିଲା । ପରିସ୍ଥିତି ଏପରି ଘଟିଲା ଯେ ଖାଦ୍ୟ ଅଭାବରେ ସୈନ୍ୟମାନେ ଘାସ ପତ୍ର ଖାଇ ଜୀବନ ରକ୍ଷା କରିବାକୁ ଲାଗିଲେ । ତଥାପି ସେମାନଙ୍କର ମନର ବଳ ଏତେ ବେଶୀଥିଲା ଯେ, ମାତୃଭୂମିର ଉଦ୍ଧାର ପାଇଁ ପାଗଳ ହୋଇ ଉଠିଲେ । ସମସ୍ତ ଅସୁବିଧା ସତ୍ତ୍ୱେ ଯେପରି ବୀରତ୍ୱ ଓ ସାହସ ସହକାରେ ବ୍ରିଟିଶ ସୈନ୍ୟଙ୍କ ସଙ୍ଗେ ସମ୍ମୁଖ ଯୁଦ୍ଧରେ ଅଜାଦ ହିନ୍ଦ ଫୌଜ ସ୍ୱଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ଯୁଦ୍ଧ କରିଥିଲେ,

ତାହା ଭାରତର ମୁକ୍ତି ସଂଗ୍ରାମର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ନେତାଜୀଙ୍କର ନେତୃତ୍ୱ ଓ ପରିଚାଳନାରେ କ୍ୟାପଟେନ୍ ମହାନ୍ତି ଓ ତାଙ୍କର 'ଗୋପବନ୍ଧୁ ବାହିନୀ' ଯୁଦ୍ଧ କ୍ଷେତ୍ରରେ ଏପରି ଦୁଃଖ କଷ୍ଟ ସହି ଧୈର୍ଯ୍ୟର ସହ ଅଗ୍ରସର ହେଉଥିଲେ ଯେ, ସେ ଦୃଶ୍ୟ ଇତିହାସ କଳ୍ପିତ କଳିଙ୍ଗାଧିପତିଙ୍କର ଗୌଡ଼ ବିଜୟ କଥା ମନେ ପକାଇଦିଏ । ବାସ୍ତବିକ ତାହା ବଡ଼ ହୃଦୟସ୍ପର୍ଶୀ । ନ ହେବ ବା କାହିଁକି ? ଉତ୍କଳର ପ୍ରାଚୀନ ରାଜା ମହାରାଜାମାନଙ୍କ ବୀରତ୍ୱ, କୀର୍ତ୍ତି, ସାହସ ଓ କୌଶଳ, ଭାରତର ଇତିହାସ ଯାବଚ୍ଚନ୍ଦ୍ରାର୍କେ ଗାୟନ କରୁଥିବ । ସେହି-ମାନଙ୍କର ବୀରରକ୍ତ କ୍ୟାପଟେନ୍ ବିପିନ ବିହାରୀ ତଥା ଗୋପବନ୍ଧୁ ବାହିନୀର ପ୍ରତି ସୈନ୍ୟର ଧମନୀରେ ଅଦ୍ୟାପି ପ୍ରବାହିତ । କଥାରେ ଅଛି "ଜାତ ବଗଡ ମୂଷା ମାରେ ।"

---

# ନବମ ପରିଚ୍ଛେଦ

କଲେକ୍ଟରୀ କଚେରୀ ପାଖ ଟ୍ରେଜେରୀ ଘଣ୍ଟାରେ ଠଣ୍ ଠଣ୍ ଦଶଟା ବାଜିଲା । ଖାକି ପୋଷାକ ବାନ୍ଧି ଲାଲପଗଡ଼ିଆ ପହରା ବାଲା ସଙ୍ଗୀନ ଲଗା ବନ୍ଧୁକଟାଏ କାନ୍ଧରେ ପକାଇ ଟ୍ରେଜେରୀ ସାମନାରେ ପହରା ଦେଉଛି । ଅଗ ଓ ପଛ ବାରଣ୍ଡାରେ ସପ ମସିଣା ପକାଇ ଦେଢେଢ ରେଜେଷ୍ଟ୍ରିବିଭାଗ ମୋହରିର ସିରସ୍ତା ମେଲାଇ ବସିବାକୁ ଆରମ୍ଭ କରୁଛନ୍ତି । ସବଡେଭିଜନାଲ ମାଜିଷ୍ଟ୍ରେଟଙ୍କ କଚେରୀ ସାମାନା ବରଗଛ ଚଉତରା ଉପରେ ବସିଥିବା ଜଣେ ହାଣ୍ଡି ଖୋଲିଆ ଓ ଆଉ ଜଣେ ଧଇଁଆ ଷ୍ଟାମ୍ପ ଭେଣ୍ଡରଙ୍କର ଚାରିପଟେ ଦେଢେଢ ମାମଲ-ତଖୋର, ଟରଣୀ, ଟାଉଟର ଓ ମକେଲମାନେ ଘେରିଛନ୍ତି । କେହି କୋର୍ଟ

ଫେସ କଲେ ତ, ତେଣୁ ପରସିଡଣ୍ଟ ଦାଗତ ଓ ଓକାଲତନାମା କଲେ କାଏଁଦା ସାହୁକାରର ଦରଜା ନଡାଣ ତରବାକୁ କମ୍ବା ବଟାଣ୍ଟ, ବ୍ରତ ଭା ଖୁବର୍ଦିସ୍ତା ଚଳାଇବା ଦାୟରେ ଜମି ଖେତ୍ରେ ଦଖଲ ଦେଇ ଦେବାକୁ ଷ୍ଟାମ୍ପ କିଣୁଛନ୍ତି । ଜଣ ତେବେ ମୋହୁରିର ସବାକୁ ଉଠି ଖଙ୍ଖରଇ ମୁହଁ ବୁଝି ଥିଲେ ତୋଲି ସିନା ସିରସ୍ତା ଖେଳି ସଙ୍ଗେ ସଙ୍ଗେ ଫସମାନଙ୍କର ପହିଲା କଚେରୀରେ ହାଜର ଦରଖାସ୍ତ ଦାଖଲ କରିବାକୁ ଫର୍ଦ୍ଦୀ କଲମରେ ଚର ଚର କରି ଲେଖିବାକୁ ଲାଗିଗଲେ । ତେବେ ତେଙ୍କର ମକେଲ ନ ଥିବାରୁ କନଯ କ ନସି ଫିଟିବ କି ନାହିଁ ଏହି ଖିଲେଣିରେ ସିରସ୍ତାରେ ବେଡାଇ ବନ୍ଧି ଯୋଡ଼ ହସ୍ତକୁ ଅଣ୍ଟ ଉପରେ ରଖି ଚାହାଁକୁ ଆଉଜି ଉର୍ଦ୍ଧ୍ୱ ମୁହାଁ ହୋଇଛନ୍ତି । କେତେକ ଟୋକାଣିଆ ନବସିଖା ଉଷ୍ଟମ୍ପଓ୍ୱାଡ ଓ ନାଗସ୍ କୋଟା ପିନ୍ଧି, ଆଉ ଫ ଉଣ୍ଟେନ ପେନକୁ ପକେଟରେ ଖୋସି ଖ୍ୟାକଡ଼ା ଫୁଟକା ମକେଲ ଖୋଜି ବୁଲୁଛନ୍ତି । କିନ୍ତୁ ସେମିତି ସିଆଣା ମକେଲ ନ ହେଲେ, ଏମାନଙ୍କ ପାଲରେ ପଡ଼ିବା ଅସମ୍ଭବ ନୁହେଁ । କଥାରେ ଲୋକ କିଣିନେବେ ସେ ଏମାନେ ! କିନ୍ତୁ ଘରକୁ ଲେଉଟି ଯିବାକୁ ବେଳକୁ ଅଣ୍ଟାରେ ମକ୍କେଲର ଖଣ୍ଡ ଘୋଟନ ଛଡ଼ା କପର୍ଦ୍ଦକ ନଥିବ । କେତେକ ଓଲା,ଦାବଡ଼ା, ଉଦାସିଆ ଫର ବୁଦ୍ଧିଆ, ଏକଜିଦିଆ ଓ ଦାଉସାଧୁଆ ଜଣ ଏ ସଂସାରରେ ନାହାନ୍ତି ଏମାନଙ୍କ କବଳରେ ପଡ଼ି ଭଳି ତଳାନ୍ତ ହେବାକୁ ? କଥାରେ ଅଛି ଯଥା, “ମାଛ ଠକ ଠକ ବଗନ ସବୁ, ଏତକ ଅଠନ୍ତି ଠକଙ୍କ ଘୁଞ୍ଚ ।” କଟକ ର ପିତା ମାନେ, କଗ ପର ଠାକ କର ବସିଥିବା ଓକିଲ ମୋକ୍ତାର, ମୋହୁରିର, ପେସ୍କାର, ଚପରାଶି, ଅମଲା ଆଦିଙ୍କ ପାଟିରେ ଠପ ଠପ ପଡ଼ିବା ଓ ଘରେ କଳାକନା ବୁଲାଇ କ୍ଷୀଣ ଯକ୍ଷଜନଙ୍କର ସର୍ବନାଶ ଘଟଇବା ।

ଓକିଲ ଶ୍ରୀଯୁକ୍ତ ବାବୁ ଧରଣୀଧର ମହାପାତ୍ରଙ୍କ ମୋହୁରିର ଶ୍ରୀ ସୁଧାମୋହନ ମହାନ୍ତି ସମସ୍ତ ମିଣ୍ଟ୍ରଙ୍କର ମୋକଦ୍ଦମା ତଦ୍ବିର କରିବାରେ ଲାଗିଗଲେ । ଏସ. ଡି. ଓ. ଙ୍କ ଇଜଲାସ ବାହାରେ ଅନେକ ଲୋକ,

ସେମାନେ ନିଶ୍ଚୟ ମାଲ ମୋକଦ୍ଦମା ସମ୍ପର୍କରେ ଆସିଥିବେ । ଚପରାଶୀ ଲୋକନାଥ ସିଂହ ଡାକ ପକାଇଲା, "ଗୋବର୍ଦ୍ଧନ ମଣ୍ଡଳ ହାଜର ହୁଏ, ଗୋବର୍ଦ୍ଧନ-ମଣ୍ଡଳ ହାଜର-ଅ-ଅ ହୁଏ, ବାସନ୍ତୀ ଦେବୀ-ଇ-ଇ ହାଜର ହୁଏ, ବାସନ୍ତୀ ଦେବୀ ସାକ୍ଷୀ ହାଜର ହୁଏ ?" ଗୋବର୍ଦ୍ଧ ମଣ୍ଡଳ ଓ ବାସନ୍ତୀ ଯାଇ କୋର୍ଟ ଭିତରେ ପଶି ଦେଖିଲେ ଡକ୍ ବା କାଠଗଡ଼ା ଭିତରେ ରାମରାମ ମିଶ୍ର, ମଧୁ ମହାପାତ୍ର, ଚନ୍ଦ୍ର ବେହେରା ଓଗେର ହାତ ଯୋଡ଼ି ହାକିମଙ୍କୁ ଚାହିଁ ଠିଆ ହୋଇଛନ୍ତି । ହାକିମ ସାମନାରେ ଗୋଟିଏ ବେଞ୍ଚରେ କୋର୍ଟ ବାବୁ ଓ ଅନ୍ୟ ବେଞ୍ଚରେ ଧରଣୀଧରବାବୁ ଓ ଉପେନ୍ଦ୍ର କର ମୁକ୍ତାର କାଗଜପତ୍ର ମେଜ ଉପରେ ରଖି ବସିଛନ୍ତି । ଆଗରୁ ମୁଦେଇ ଓ ମୁଦାଲା ତରଫରୁ ଜାସ୍ତ ଜମାନବନ୍ଦୀ ସରିଯାଇ-ଥିଲା । ଆଜି ହାକିମ ରାଏ ଦେବାକୁ ଥିବାରୁ ଉଭୟ ପକ୍ଷ ହାଜର ଅଛନ୍ତି । ପେଷ୍କାର ନଥି ନେଇ ହାକିମଙ୍କ ଆଗରେ ଥୋଇଦେବାରୁ ମିଷ୍ଟର କନେଟ୍ ଦସ୍ତଖତ କଲେ ଓ ପେଷ୍କାରଙ୍କୁ ରାଏ ପଢି ଶୁଣାଇଦେବାକୁ କହିଲେ । ପେଷ୍କାର ଅବିଲମ୍ବେ ଠିଆ ହୋଇ ଯାହା ପଢିଦେଲେ ତାର ମୋଟାମୋଟି କଥା ଏହା—"ମୁଦାଲା ରାମରାମ ମିଶ୍ର, ମଧୁ ମହାପାତ୍ର, ଚନ୍ଦ୍ର ବେହେରା ଲଛମନ ଗୋଆଲ ସିଂହ, ନବଘନ ଛୁଆଲ ସିଂହ ଓ ମାର୍କଣ୍ଡ ମାଝୀ ଗୋଟିଏ ଗୁପ୍ତମତ ଷଡ଼ଯନ୍ତ୍ର କରି କେତେକ ଦୁର୍ବୃତ୍ତଙ୍କ ଦ୍ୱାରା ବାସନ୍ତୀ ଦେବୀଙ୍କୁ ଅପହରଣ କରି ନେବା ଓ ଶ୍ରୀ କପିଳବିହାରୀ ମହାନ୍ତିଙ୍କ ଉପରେ ଅଭସ ରଖି ଦାଉ ସାଧିବା, ପ୍ରେମଲତା ଓ ଶ୍ରୀ ମୋହିନୀ ମୋହନ ମିଶ୍ରଙ୍କର ଅସବର୍ଣ୍ଣ ବିବାହ ସମ୍ପାଦନ ନ କରାଇ ଦେବା ଏବଂ ଲେଖନପୁରର ଚଉଧୁରୀ ଚନ୍ଦ୍ରଶେଖର ଦାଶଙ୍କ କନ୍ୟା ସହ ମୋହିନୀ ମୋହନଙ୍କର ବିବାହ ସମ୍ବନ୍ଧ କରାଇବା," ପ୍ରଭୃତି ଉଲ୍ଲେଖଯୋଗ୍ୟ । ଶେଷରେ ରାଏରେ ନ୧ମ୍ବର ମୁଦାଲାଙ୍କୁ ଛଅ ମାସ ସଶ୍ରମ କାରାଦଣ୍ଡ ଓ ଏକହଜାର ଟଙ୍କା ଜୋରିମାନା; ନ୨ମ୍ବର ମୁଦାଲା ଓ ନ୩ମ୍ବର ମୁଦାଲା ପ୍ରତ୍ୟେକଙ୍କୁ ଚାରିମାସ ସଶ୍ରମ କାରାଦଣ୍ଡ ଓ ଏକଶହ ଟଙ୍କା ଜୋରିମାନା ଆଦେଶ ଦିଆଯାଇଥିଲା । ଅନ୍ୟମାନେ ନିର୍ଦ୍ଦୋଷ ଓ ପ୍ରମାଣ ଅଭାବରୁ ଖଲାସ ହୋଇଥିଲେ ।

ତତ୍ପରେ ପୋଲିସ ଅସାମୀମାନଙ୍କୁ ହାତକଣ୍ଠ ପକାଇ ଓ ଅଣ୍ଟାରେ ରସି ବାନ୍ଧି ଜେଲକୁ ନେଇ ଚାଲିଗଲେ । ବାସନ୍ତୀ ଓ ଗୋବର୍ଦ୍ଧନ ସେହିଦିନ ଗ୍ରାମକୁ ଫେରି ଆସିଲେ । ତହୁଁ ପର ଦିନ କଣ୍ଟ୍ରିବ୍ ବାହାର ସେବା କୁଟୀରରେ ଗୋବର୍ଦ୍ଧନ ଗୋଟିଏ ଜଗନ୍ନାଥ ମେଳା କରାଇ ଛାତ୍ର-ଛାତ୍ରୀମାନଙ୍କୁ ଭୋଜି ଦେଇଥିବାର ଶୁଣାଗଲା ।

ବାସନ୍ତୀ ପୂର୍ବ ପରି ତାର ସେବା କାର୍ଯ୍ୟରେ ମନୋନିବେଶ କଲା ସତ, କିନ୍ତୁ ଯେ ତାର କର୍ତ୍ତବ୍ୟର ଚାଳକ ଥିଲେ ଓ ତାର ପ୍ରାଣରେ ପ୍ରେରଣା, ଉତ୍ସାହ ଓ ଉନ୍ମାଦନା ଆଣି ଦେଉଥିଲେ ସେହି ଜୀବନ ସର୍ବସ୍ୱଙ୍କର କୌଣସି ସଂବାଦ ବା ସଂକେତ ନ ପାଇ ଅଜାଣତରେ ତାହାର ହୃଦୟ କୁହୁଳିବାକୁ ଲାଗିଲା । ସମୟେ ସମୟେ ସେ ଭାବେ, "ଭଗବାନ କଣ ଏତେ ନିର୍ଦ୍ଦୟ ! ତାଙ୍କୁ କଣ ଅଗ୍ନିରେ ମଧ୍ୟ ପରୀକ୍ଷା ଦେବାକୁ ପଡ଼ିବ !" ପୁଣି ପର ମୁହୂର୍ତ୍ତରେ ଭାବେ, "ନା, ଯେ ସଂସାର ଆତଯାତ କରୁଛନ୍ତି, ଯାହାଙ୍କ ଇଙ୍ଗିତରେ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର, ଦେବତା, ମାନବ, ପଶୁ ପକ୍ଷୀ, କୀଟ ପତଙ୍ଗ, ନଦୀ ପର୍ବତ, ବୃକ୍ଷଲତା ଆଦି ସ୍ୱ ସ୍ୱ ସ୍ୱାଭାବିକ କାର୍ଯ୍ୟ ସମ୍ପାଦନ କରିବାରେ ବାଧା ବିଘ୍ନ ନ ପାନ୍ତି ଏବଂ ଯାହାଙ୍କର ନିରପେକ୍ଷ ଈଶ୍ୱରର ଅମୃତ ଆଦେଶ ଲାଭ କରିବାକୁ କ୍ଷମ ହୁଅନ୍ତି, ସେ କଣ କେବେ ନିଷ୍ଠୁର ନିର୍ମମ ହୋଇ ପାରନ୍ତି ? ତାହା ହୋଇଥିଲେ, ସେ ଅଛି ଅତ୍ୟାଚାରୀ ସମାଜ ଶୋଷକଙ୍କଠାରୁ ଅପ୍ରତ୍ୟାଶିତ ଭାବରେ ମାନ ସଂଭ୍ରମ ଓ ଜୀବନ ବଞ୍ଚାଇ ପାରି ନ ଥାନ୍ତେ । ସେହି କରୁଣାମୟଙ୍କ ଅପାର କୃପାରୁ ସେ ଆଜି ନର ରାକ୍ଷସଠାରୁ ଉଦ୍ଧାର ପାଇଛନ୍ତି ।"

ପ୍ରେମଲତା ଡାକ୍ତରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ତାଙ୍କର ପିତାଙ୍କର ବ୍ୟବସାୟର ଉତ୍ତରାଧିକାରିତ୍ୱ ଲାଭ କରିବାକୁ ମନ ବଳାଇବା ସଙ୍ଗେ ସଙ୍ଗେ, ଅଶିକ୍ଷିତା, ପୁରୁଷ ଦ୍ୱାରା ନାନାଭାବେ ଲାଞ୍ଛିତା, ନାଗରିକ ସ୍ୱାଧୀନତାରୁ ବଞ୍ଚିତା ଓ ଦାସତ୍ୱରେ ବନ୍ଦୀ, ସେହି ପଲ୍ଲୀବାଳାମାନଙ୍କର ଦୁର୍ଦ୍ଦଶା ମୋଚନ କରି ପାରିବେ, ତା ସେ

ସହରରେ ରହୁଥିଲେ ଅନ୍ତତଃ ନିଜର କର୍ତ୍ତବ୍ୟ କରି ପାରନ୍ତେ— ଏହି ଅଭିଜ୍ଞତାରେ କୌଣସି ସରକାରୀ ସାହାଯ୍ୟ ନ ନେଇ ଗୋଟିଏ ଭ୍ରାମ୍ୟମାନ ଚିକିତ୍ସାଳୟ ସୃଷ୍ଟି କରି, ଗ୍ରାମେ ଗ୍ରାମେ ବୁଲିବାକୁ ଲାଗିଲେ । ସେ ସ୍ୱାବଲମ୍ବୀ ହୋଇ ରହିବା ପାଇଁ ଅବଶ୍ୟ ଧନ ଅର୍ଜ୍ଜନ କରୁଥିଲେ, କିନ୍ତୁ କେତେ କେତେ ସ୍ତ୍ରୀ ଯେ ଲଜ୍ଜା ଓ ରକ୍ଷଣଶୀଳତାର ତାଡ଼ଣା ମଧ୍ୟରେ ରହି ନିଜେ ନାନା ଆଧି ବ୍ୟାଧିରେ ପଡ଼ି ଅକାଳରେ ଜୀବନ ହରାଉଥିବା ସଙ୍ଗେ ସଙ୍ଗେ ସେମାନଙ୍କର ଭବିଷ୍ୟତ ସନ୍ତାନ-ମାନଙ୍କର ମଧ୍ୟ ଅଶେଷ ଅମଙ୍ଗଳ କରୁଥିଲେ, ସେଥିରୁ ସେମାନଙ୍କୁ ମୁକ୍ତ କରିବାର ଏ ଗୋଟିଏ ଆଦର୍ଶ କାର୍ଯ୍ୟ ପନ୍ଥା ହୋଇପାରେ; ଏଥିରେ ସନ୍ଦେହ ନାହିଁ । ତଥାପି ସରକାରୀ ଉଦ୍ୟମ ବ୍ୟତୀତ ଏହି ବ୍ୟକ୍ତିଗତ ଚେଷ୍ଟା କେବଳ ସମୁଦ୍ରକୁ ଶଙ୍ଖେ ପାଣି ।

ପ୍ରେମଲତାଙ୍କ ସଦିଚ୍ଛା, ସୁଚିନ୍ତିତ କାର୍ଯ୍ୟ ଯୋଜନା, କର୍ତ୍ତବ୍ୟ-ନିଷ୍ଠା ଓ ସହାନୁଭୂତିଶୀଳତା ହେତୁ ସେ କେତେକ ସହକର୍ମିଣୀଙ୍କୁ ପାଇ କାର୍ଯ୍ୟ କ୍ଷେତ୍ରରେ ବହୁତ ଆଗେଇ ଗଲେଣି ଏବଂ ସ୍ତ୍ରୀ ତଥା ପୁରୁଷ ସମାଜରେ ବହୁ ଆଦର ପାଉଛନ୍ତି । ବାସନ୍ତୀ ତାଙ୍କର ଏହି ଭ୍ରାମ୍ୟମାଣ ଡାକ୍ତରଖାନାରେ ରୋଗୀ ସେବାକାରିଣୀ ରୂପେ କାର୍ଯ୍ୟ କରୁଛି । ଆଲୋପ୍ୟାଥି ଔଷଧର ନାମ ଓ ବ୍ୟବହାର, ଡାକ୍ତରାଣୀଙ୍କ ଔଷଧ ତାଲିକା ଅନୁସାରେ ଔଷଧମାନଙ୍କର ମିଶ୍ରଣ ଏବଂ ରୋଗୀର କ୍ଷତସ୍ଥାନ ଧୂଆଧୋଇ କରିବା, ପଟି ବାନ୍ଧିବା ଓ ଅନ୍ୟାନ୍ୟ ଆନୁସଙ୍ଗିକ କାର୍ଯ୍ୟ ବେଶ ସେ ଶିକ୍ଷା କରୁଅଛି । ପ୍ରେମଲତା କହନ୍ତି, "ଏତେ ଅଳ୍ପ ସମୟରେ ଧାତ୍ରୀ ଶିକ୍ଷାରେ ପାରଗ ହେବା ସେ କ୍ୱଚିତ୍ ସ୍ତ୍ରୀ ଦେଖିଛନ୍ତି । ଏ ସବୁ କେବଳ ବାସନ୍ତୀର ସେବା ଭାବ ଓ ଆନ୍ତରିକତାର କାରଣ ।

ଭ୍ରାମ୍ୟମାଣ ଚିକିତ୍ସାଳୟଟିର ଆକାର ପ୍ରକାର ପାଠକମାନେ ବୋଧ ହୁଏ ଧାରଣା କରିପାରୁ ନଥିବେ । କାରଣ ସେମାନେ ହେଲେ ବିଂଶ ଶତାବ୍ଦୀ ମଧ୍ୟଯୁଗର ଲୋକ । କେତେ କେତେ ନାହିଁ ନ ଥିବା କଥା ବିଜ୍ଞାନର ପ୍ରଗତି ପଥେ ଦେଖିଲେଣି ବା ଶୁଣିଲେଣି । ତେଣୁ

ଆମର ନବ୍ୟା ସଭ୍ୟା ଡାକ୍ତର ସାହୁବାଣୀଙ୍କର ଭ୍ରାମ୍ୟମାଣ ଡାକ୍ତର-ଖାନା ନିଶ୍ଚୟ ବାଷ୍ପୀୟ ଶକଟ, ବାଷ୍ପୀୟ ପୋତ, ଅର୍ଣ୍ଣବ ପୋତ, ମୋଟର ଗାଡ଼ି, ଟାମଗାଡ଼ି କିଛି ନ ହେଲେ ପେଟ୍ରୋଲ ଚାଳିତ ଉଡ଼ନ୍ତା ଖଟୋଲା ଉପରେ ହୋଇଥିବ ବୋଲି ସେମାନଙ୍କର ଅନୁମାନ କରିବା ସ୍ୱାଭାବିକ । ମା ନ ଲେଜ ସର୍ଜନ ପ୍ରେମଲତା ମହାନ୍ତି ବଡ଼ ବାସ୍ତବବାଦୀ ଥିବାରୁ ଓ ଦେଶର ଅଭ୍ୟନ୍ତରସ୍ଥ ଦୂର ବା ନିକଟ ଅଞ୍ଚଳ ସୁଦ୍ଧା ଉପଯୁକ୍ତ ରାସ୍ତା ବା ଜଳ ପଥ ସଂଯୁକ୍ତ ନ ଥିବାରୁ ଡାକ୍ତର ଖାନାଟି ଯେପରି ଦେଶର ଯେ କୌଣସି ଅଂଶକୁ ଚଳାଚଳ ହୋଇ ପାରିବ ଓ ପ୍ରତ୍ୟେକ ଦୁଃଖୀ ରୋଗୀର ପ୍ରକୃତ ଉପଯୋଗରେ ଆସିବ, ସେହି ଦୃଷ୍ଟିରୁ ସେ ଠିକ ଗୋଟିଏ ମୋଟର ଲରୀର ଭିତରେ ବଶିଷ୍ଟ ଗୋଟିଏ କାଠ ଓ ଲୁହା ବସ୍ତା ତଥା ଗାଡ଼ି ବଗିର ମୁତାବକ ପ୍ରସ୍ତୁତ କରାଇଥିଲେ । ଏହା ଯନ୍ତ୍ରକାଯୁକ୍ତ ଏବଂ ତୁଲେ ବଡ଼ ବଡ଼ ବଳଦଙ୍କ ଦ୍ୱାରା ଟଣା ହୁଏ । ଏହିପରି ଗୋଟିଏ ଚିକିତ୍ସା ଯାନରେ ଜଣେ ବୃଦ୍ଧ, ନିଜେ ଲେଡି ସର୍ଜନ, ନର୍ସ ବାସନ୍ତୀ ଓ ଅନ୍ୟଜଣେ ଚାକର ନିଯୁକ୍ତ ଥାନ୍ତି । ଗାଡ଼ିର କାନ୍ଥ ଗୁଡ଼ିକ ଆଲମାରିର କାର୍ଯ୍ୟ କରନ୍ତି ଓ ଗାଡ଼ିର ମଧ୍ୟ ସ୍ଥାନରେ ଲେଡି ସର୍ଜନ ଓ ନର୍ସଙ୍କର ଟେବଲ ଏବଂ ଅସ୍ତ୍ରକ୍ରିୟା ଉପଯୋଗୀ ଯନ୍ତ୍ରପାତି ରଖା ହୋଇଥାଏ । ଏତଦ୍ ବ୍ୟତୀତ ଷ୍ଟୋଭ୍, ହଟ୍ ୱାଟର୍ ବ୍ୟାଗ୍, ଆଇସ୍ ବ୍ୟାଗ୍, ଡୁସ୍ ଷ୍ଟୁଲ୍ ପ୍ୟାନ, ଇଲେକ୍ଟ୍ରିକ ଜାର ଇତ୍ୟାଦି ଆଧୁନିକ ଚିକିତ୍ସା ଉପକରଣମାନ ଏଥିରେ ସଜ୍ଜିତ ଅଛି । ବିଶେଷ ଧ୍ୟାନ ଦେବାର ବିଷୟ ଏହି ଯେ, ଗାଡ଼ି ଛାତଉପରେ ପ୍ରଚାର ପାଇଁ ଗୋଟିଏ ଲାଉଡ ସ୍ପିକର ଓ ଗାଡ଼ି ଭିତରର ମାଇକ୍ରୋଫୋନ ସହିତ ଖଞ୍ଜାଥାଏ । ଗୋଟିଏ ଗ୍ରାମ୍‌ଫୋନ ଏବଂ କେତେଗୁଡ଼ିଏ ରେକର୍ଡ ମଧ୍ୟ ଲୋକଙ୍କର ଚିତ୍ତ ବିନୋଦନ ପାଇଁ ଭିତରେ ରଖାହୋଇଛି ।

ଲେଡି ସର୍ଜନଙ୍କର ସେପରି ଧରାବନ୍ଧା ସ୍ୱେଚ୍ଛାକୃତ ଫିସ୍ ନାହିଁ । ଯୁଆଡ଼ନ୍ତି ସେ ଡଣେ ଟଙ୍କା ଠାରୁ ଆଠଅଣା ପର୍ଯ୍ୟନ୍ତ ନେଉଥାନ୍ତି ବା କାହିଁ

କପଟତ ନାହିଁ । ଔଷଧର ମୂଲ୍ୟ ମଧ୍ୟ ଅଦ୍ଭୁତ । ସାହାହେଉ, ବ୍ୟବସାୟୀଟି ଯେତେ ଚେଷ୍ଟାକରିଥିଲେ ଓ ଲୋକପ୍ରିୟ ହୋଇପାରି ନଥିଲେ, ଏତେବଡ଼ ଗୋଟାଏ ସଂସ୍ଥା କିପରି ଚଳୁଥାନ୍ତା ?

କେତେକ ମରଦୁଷ୍ଟୀ ଧରଣର ସ୍ତ୍ରୀ ଓ ପୁରୁଷଙ୍କର ଧାରଣା ଯେ, ଡାକ୍ତରି ଔଷଧରେ ବ୍ରାଣ୍ଡି ମିଶାଥାଏ । ତାହା ଏକଦମ୍ ଅଳୀକ ନ ହେଲେ ମଧ୍ୟ ସାଧାରଣ ଔଷଧରେ ଏହାର ବ୍ୟବହାର କରନ୍ତି । ଏପରି ଏକ ଧାରଣା ରକ୍ଷଣଶୀଳ ନାରୀ ଓ ପୁରୁଷଙ୍କ ମନରୁ ଦୂର କରିବାକୁ ହେମଲତା ବହୁତ ଚେଷ୍ଟା କରନ୍ତି ଏବଂ "ଔଷଧାର୍ଥେ ସୁରାପାନ" ମଧ୍ୟ ଧର୍ମରେ ଅଛି ଅଣେନାହିଁ ବୋଲି ଉଦାହରଣ ଦେଇ ଲୋକମାନଙ୍କୁ ବୁଝାନ୍ତି । ସଂକ୍ରାମକ ରୋଗୀ, ପରିବାର ଓ ସମାଜଠାରୁ ଅଲଗା ରହିଲେ, ତାହା ନିଜର ଓ ସାଧାରଣଙ୍କର ହିତଦୃଷ୍ଟିରୁ ଲାଭଜନକ ବୋଲି ସେ ପ୍ରଚାର ମଧ୍ୟ କରନ୍ତି । ଚେଙ୍ଗୁ କୁଷ୍ଠ, ଯକ୍ଷ୍ମା, ଓଲେଉ ଓ ବସନ୍ତ ରୋଗୀ-ମାନେ ସ୍ୱତନ୍ତ୍ର ଜଳାଶୟ ବ୍ୟବହାର କରିବା ଓ ସୁସ୍ଥଲୋକଙ୍କ ସହ ମିଳ ମିଶା ନକରିବା ପ୍ରତି ଜନସାଧାରଣ ଦୃଷ୍ଟିଦେବାକୁ ସେ ବିଶେଷ ଅନୁରୋଧ କରୁଥିଲେ । ମା ପିଲାକୁ ଅତି ପେଲବସର କରି ପାଟିରୁ ପାନଶିଠା ବା ଅର୍ଦ୍ଧଭୁକ୍ତ ଦ୍ରବ୍ୟ ଖାଇବାକୁ ଦେବା ସ୍ୱାସ୍ଥ୍ୟର ଅନୁକୂଳ ନୁହେଁ । ସନ୍ଧ୍ୟ ଜଳାନ୍ଧସହ ଅସିଦ୍ଧ ପଲାଣ୍ଡୁ ଭକ୍ଷଣ ଲକ୍ଷ୍ମୀଙ୍କ ପକ୍ଷରେ ସ୍ୱାସ୍ଥ୍ୟ ଉପଯୋଗୀ ଅଟେ । ଶରୀରକୁ ତୈଳ ଓ ହରିଦ୍ରାରେ ରଞ୍ଜିତ କରିବାର ଯେଉଁ ପ୍ରାଚୀନ ପ୍ରଥା ଆମ ଦେଶରେ ଅଛି, ତାହା କିପରି ସ୍ୱାସ୍ଥ୍ୟପ୍ରଦ ଓ ବିଷାକ୍ତ କୀଟ ବା ପ୍ରାଣୀ ଦଂଶନର ପ୍ରଧାନ ପ୍ରତିଷେଧକ ହୋଇଥିବା ସତ୍ତ୍ୱେ, ଆଧୁନିକମାନଙ୍କର ବହୁଳ ସାବୁନ ବ୍ୟବହାରରେ ତାହା ଅଳ୍ପେ ଅଳ୍ପେ ସମାଜରୁ ଲୋପପାଇ କିପରି ସମାଜର ଅମଙ୍ଗଳ ସାଧନ କରୁଛି, ତାହା ତାଙ୍କର ଆଲୋଚ୍ୟ ବିଷୟ ଥିଲା । ନାସିକା ଓ କର୍ଣ୍ଣରେ ଶୈଶବାବସ୍ଥାରୁ ଛିଦ୍ରକରି ଶିରପ୍ରଶିରାର ସ୍ଥାନିକ ଆଘାତ ଦ୍ୱାରା କେତେକ ସ୍ନାୟବିକ ରୋଗର ନିରୋଧ କରାଯାଇ ଥାଏ କିନ୍ତୁ ପାଶ୍ଚାତ୍ୟ ସଭ୍ୟତାର ସଂସ୍ପର୍ଶରେ ଆସି ଉକ୍ତ ପ୍ରାଚୀନ ପ୍ରଥା ମାନଙ୍କରେ ବ୍ୟଠାଙ୍କ

ଯାତ ଉତ୍ସବାଦ୍ରାସ୍ତ ଏ ଦେଶରେ ନାନା ବିଦେଶାଗତ ରୋଗ ଯେ ପ୍ରସାର ଲାଭ କରନ୍ତି ତାହା କିଏ ଅସ୍ୱୀକାର କରିବ ?

ଅଧିକନ୍ତୁ ପ୍ରେମଲତା ତାଙ୍କର ଲାଉଡ୍-ସ୍ପିକରରେ ଶିଶୁର ସ୍ୱାସ୍ଥ୍ୟ, ସନ୍ତାନ ପାଳନ, ଶିକ୍ଷା ଓ କୁଟୀର ଶିଳ୍ପର ପ୍ରସାର ଏବଂ ସମାଜରେ ନାରୀର ସ୍ଥାନ ବିଷୟରେ ବକ୍ତୃତା ଦେଇ ପ୍ରଚାର କରି ବୁଲନ୍ତି । ସ୍ଥୂଳତଃ ନାରୀ ସମାଜର ଦୁଃଖ ଦୁର୍ଦ୍ଦଶା ମେଣ୍ଟାଇବା ଏବଂ ଗୋଟିଏ ନିରୋଗ ଦେଶ ଓ ଜାତି ଗଢ଼ିବାରେ ପୁରୁଷ ସଙ୍ଗେ ସ୍ତ୍ରୀ କିପରି ସହଯୋଗ କରିପାରିବ, ସେଥିପାଇଁ ଲେଡ଼ି ସର୍ଜନ ପ୍ରେମଲତାଙ୍କର ଅକ୍ଳାନ୍ତ ଉଦ୍ୟମ ବାସ୍ତବିକ ଶ୍ଳାଘ୍ୟ ଅଟେ ।

ବାସନ୍ତୀ ତାଙ୍କ ପାଖରେ ଶିକ୍ଷା ଲାଭ କରି ଗୋଟିଏ ଚୋସ୍ତ ଧାଈ ପାଲଟି ଗଲେଣି । ସେ ବୁଝିଛି,—ଆତ୍ମା ପରମାତ୍ମାର ଅଙ୍ଗ ବିଶେଷ, ସକଳଘଟେ ନାରାୟଣ, ଅଛନ୍ତି ଅନାଦି କାରଣ, ପ୍ରାଣୀ ସେବାହିଁ ଭଗବତ୍ ଭକ୍ତି । କାଷ୍ଠମୂର୍ତ୍ତି, ପାଷାଣ ମୂର୍ତ୍ତି ବା ଧାତବମୂର୍ତ୍ତିଙ୍କୁ ମହା ସମାରୋହରେ ପର୍ବତତୁଲ୍ୟ ଭୋଗସାମଗ୍ରୀ ସମର୍ପଣ କରି, ଧର୍ମ ମନ୍ଦିରକୁ ଯାଇ, ଈଶ୍ୱରଙ୍କ ନାମ ମାଳ ଦ୍ୱାରା ଜପି, ଟଙ୍କା ଚୈତନ୍ୟ ଟାଣି ଓ ଶେଷରେ ଲୋକଙ୍କୁ ଟଙ୍କା ବାଣ୍ଟିବାକୁ ମନ ମଧ୍ୟରେ ଫିକର ବାନ୍ଧିଲେ; ଆତ୍ମା ଦେହେ ଦେହରେ ନିର୍ବିକାର ହୋଇ ପରମାତ୍ମାଙ୍କ ସହ ବିଲୀନ-ହୋଇପାରେ ନା ।



# ଦଶମ ପରିଚ୍ଛେଦ

ଜର୍ମାନୀ, ଇଟାଲି ଓ ଜାପାନ ଲିଗ୍ ଅଫ୍ ନେସନ୍‌ସବୁ ଗୋଟି ଗୋଟି କରି ଅଲଗା ହୋଇ ଆର୍ମାମେଣ୍ଟ ବାନ୍ଧିବା ପରେ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଘୋଷିତ ହେଲା । ଅଳ୍ପ କେତେ ମାସ ମଧ୍ୟରେ ହିଟ୍‌ଲର ପୋଲାଣ୍ଡ, ନରୱେ, ଡେନମାର୍କ, ହଲାଣ୍ଡ, ବେଲଜିୟମ, ଫ୍ରାନ୍‌ସ, ଗ୍ରୀସ୍ ଓ ଯୁଗୋସ୍ଲାଭିଆ ଜୟ କରି ଇଂଲଣ୍ଡ ଅଭିଯାନ କଲା ଏବଂ ତାକୁ କାଲମ୍ବ ନ କରି ବୋମାବୃଷ୍ଟି ଚଳାଇଲା । ପରେ ସୋଭିଏଟ ରୁଷିଆ ଠାରୁ ପ୍ରଚଣ୍ଡ ଆକ୍ରମଣ ଆଶଙ୍କା କରି ଜର୍ମାନୀର ଯାନ୍ତ୍ରିକ ବାହିନୀ ଓ ବୋମାବର୍ଷୀ ବାହିନୀ ବଡ଼ କୌଶଳପୂର୍ଣ୍ଣ ଦକ୍ଷତା ଦେଖାଇ କହ୍ୟୁକ ଗଭିରେ ରୁଷିଆର ରାଜଧାନୀ ମସ୍କୋ ସହରରେ ପହଞ୍ଚି ଆକ୍ରମଣ ଚଳାଇଲେ ।

ଇଟାଲୀର ଡେକ୍‌ଟେଟ ମୁସୋଲିନ ତାଙ୍କର ମେଡିଟେରାନ୍ ନୀତି ବଳରେ ଆଫ୍ରିକାରେ ଭୀଷଣ ଯୁଦ୍ଧ ଚଳାଇ ଉତ୍ତର ଆଫ୍ରିକାକୁ ଅସ୍ତବ୍ୟସ୍ତ କରି ପକାଇଥିଲେ । କିନ୍ତୁ ମିତ୍ରପକ୍ଷରୁ ଇଂଲଣ୍ଡର ସେନାପତି ଲର୍ଡ ୱାଭେଲ୍ ଇଟାଲୀକୁ ସମ୍ପୂର୍ଣ୍ଣ ପରାଭୂତ କରିବାରୁ ଇଟାଲୀ ସେନା ଆତ୍ମସମର୍ପଣ କଲା । ଜର୍ମାନୀ ୧୯୪୫ ମସିହା ମେ ମାସ ତା ୭ ରିଖରେ ପରାଭୂତ ହେଲା ଓ ଜାପାନ ସେହିବର୍ଷ ଅଗଷ୍ଟ ୧୪ ତାରିଖରେ ବ୍ରହ୍ମଦେଶରୁ ପରାସ୍ତ ହୋଇ ପଳାଇ ଗଲା । ଆମେରିକାନ ବିମାନ ବାହିନୀ ଜର୍ମାନୀରୁ ହିଟଲର ନିରୁଦ୍ଦିଷ୍ଟ ବା ନିହତ ହେବାପରେ ଯେଉଁ ପରମାଣୁ ବୋମା ନିଜ ରାଜ୍ୟକୁ ନେଇ ଆସିଥିଲେ, ସେଥିମଧ୍ୟରୁ ଦୁଇଗୋଟି ଜାପାନର ପ୍ରଧାନ ସହର ହିରୋସିମୋ ଓ ନାଗାସାକିରେ ପକାଇ ଦେଇ ଜାପାନର ମେରୁଦଣ୍ଡ ଭାଙ୍ଗି ଦେଇଥିଲେ ।

କିନ୍ତୁ ଚତୁର୍ଦ୍ଦିଗରୁ ଯେତେବେଳେ ସର୍ବତ୍ର ଜୟଲାଭ କରୁଥିଲେ, ସେତେବେଳେ ଆମର ଆଜାଦ୍ ହିନ୍ଦ୍ ଫୌଜ ଇମ୍ଫାଲ, ମଣିପୁର ଓ

ଆସାମ୍ ସୀମାନ୍ତରେ ଯୁଦ୍ଧ ଚଳାଇ ଥିଲେ । କ୍ୟାପଟେନ୍ ଶପିନ ବକ୍ସୀଙ୍କ ମହାନ୍ତିଙ୍କର ଗୋପବନ୍ଧୁ ବାହିନୀ ମଣିପୁରଠାରେ ପ୍ରାଣମୂର୍ଚ୍ଛା ଯୁଦ୍ଧ ଚଳାଇ ଥାନ୍ତି । ମାତ୍ର ଭାଗ୍ୟର ବିପର୍ଯ୍ୟ ଘଟିଲା, ସେନାପତି ଶ୍ରୀଯୁକ୍ତ ସୁଭାଷଚନ୍ଦ୍ର ବୋଷଙ୍କର ଜାତୀୟ ବାହିନୀ ସିଙ୍ଗାପୁରଠାରେ ଆତ୍ମ-ସମର୍ପଣ କଲା । ଶ୍ରୀଯୁକ୍ତ ବୋଷ ଉଡ଼ାଜାହାଜରେ ଖସି ଚାଲିଗଲେ ଓ ବର୍ତ୍ତମାନ ସୁଦ୍ଧା ତାଙ୍କର କୌଣସି ପତ୍ତା ମିଳନାହିଁ । ୧୯୪୫ ମଇ ମାସରେ ସେଗଲ, କ୍ୟାପଟେନ ଧୀଲେନ, କ୍ୟାପଟେନ୍ ସାନ ଓ୍ୟାଜ ଓ କ୍ୟାପ-ଟେନ ମହାନ୍ତିଙ୍କ ସମେତ ଅନେକ ସୈନ୍ୟ ଯୁଦ୍ଧ ବନ୍ଦୀ ରୂପେ ଭାରତକୁ ଆସିଥିଲେ । ଦିଲ୍ଲୀର ଲାଲ କିଲ୍ଲାରେ ସେମାନଙ୍କର ସାମରିକ ବିଚାର ଚାଲିଲା । ହତ୍ୟା ଓ ଯୁଦ୍ଧ ଅଭିଯୋଗରେ ସେମାନଙ୍କର ପ୍ରାଣଦଣ୍ଡ ଆଦେଶ ହେଲା । କିନ୍ତୁ ଭାରତ ମାତାର ଏହି ବୀର ସନ୍ତାନଗଣ ମା'ର ବନ୍ଧନ ଶୃଙ୍ଖଳ ଛିନ୍ନ କରି ସ୍ୱାଧୀନତା ରୂପକ ମହା ପୂଜା ସମ୍ଭାର ଆୟୋଜନପାଇଁ କ୍ଷୁଧାତୃଷାକୁ ଜଳାଞ୍ଜଳି ଦେଇ ଓ 'ଶରୀର ମାଦ୍ୟଂ ଖଳୁ ଧର୍ମ ସାଧନଂ' ଆଦର୍ଶରେ ଅନୁପ୍ରାଣୀତ ହୋଇ ଯେଉଁ ଅଦମ୍ୟ ସାହସ ଦେଖାଇଥିଲେ; ସେହି ଅସାଧାରଣ କୃତିତ୍ୱ ମହାଭାରତୀୟ ଜାତିକୁ ଉଦ୍‌ବୁଧ କଲା । ସୁତରାଂ ହିମାଳୟଠାରୁ କୁମାରିକା ଓ ମଣିପୁର ଠାରୁ ବେଲୁଚିସ୍ଥାନ ପର୍ଯ୍ୟନ୍ତ ଚାଳିଶ କୋଟି ଜନତା ଏହି ଜାତୀୟ ସଙ୍କଟରେ ଏକସ୍ୱର ଉଠାଇ ସେହି ସ୍ୱଜାତୀୟ ମୃତ୍ୟୁଦଣ୍ଡାଦେଶର ଘୋର ପ୍ରତିବାଦ ପୂର୍ବକ ନିରପେକ୍ଷ ବିଚାର କରିବା ପାଇଁ ଦାବୀ କଲେ । ବାରିଷ୍ଟର ଭୁଲାଭାଇ ଦେଶାଇ, ଦେଶପ୍ରେମୀ ସାପ୍ରୁ, ଅଡ଼ଭୋକେଟ ମୋହିନୀ ମୋହନ ମିଶ୍ର ପ୍ରଭୃତି ବରିଷ୍ଠ ଆଇନଜ୍ଞ ଆସାମୀମାନଙ୍କ ପକ୍ଷରୁ ପ୍ରାଣପଣେ ଲଢ଼ିଲେ । ଭାରତର ମୁଖ୍ୟ ପତ୍ର ପତ୍ରିକାମାନେ ଜାତିର ମୁକ୍ତି ସଂଗ୍ରାମରେ ଲମ୍ଫ ପ୍ରଦାନ କରିଥିବା ଏହି ଦୁର୍ବାର ସାହସିକ ସୈନ୍ୟମାନଙ୍କର ମୁକ୍ତି ପାଇଁ ବଜ୍ର ନିର୍ଘୋଷରେ ଜ୍ୱାଳାମୟୀ ଟିକାଟିପ୍ପଣୀ ପ୍ରକାଶ କରିବାକୁ ଲାଗିଲେ । ଭାରତସାରା ବିଭିନ୍ନ ରାଜନୈତିକ ଦଳ, ଧନୀ ଜମିଦାର, କୃଷି ମୂଲିଆ, ଶିକ୍ଷକ ଛାତ୍ର, ହାକିମ ହୁକୁମା, ପୁଲିସ ବାହିଣୀ, ଏପରିକି ଇଂରେଜ ସରକାରଙ୍କର ସାମରିକ ବଳ ବମ୍ବେ, କରାଚି, କୋଚିନ

ଓ ଭାରତୀୟ ସ୍ଥଳ, ନୌ ଓ ବିମାନ ବାହିନୀ ସୈନ୍ୟ, ସେନାରୁ ତଥା ବିମାନ ବାହିନୀରୁ ଅଦମ୍ୟ ବିପ୍ଳବର ଉତ୍ସ ଉଠିଲା । ବଡ଼ ଜୋର୍ ହୋଇ ଉଠିଲା ଗୋରା ଓ କଳାସେନା ମଧ୍ୟରେ ବିଦ୍ୱେଷବହ୍ନି । ସୈନ୍ୟାଧ୍ୟକ୍ଷଙ୍କର ଜୀବନ ହେଲା ସଙ୍କଟାପନ୍ନ । ପୁଣି ଅଗଷ୍ଟ ବିପ୍ଳବ ପରି ବ୍ୟାପକଭାବେ ଦେଖାଗଲା ଅଶାନ୍ତି ଓ ବିଶୃଙ୍ଖଳା । ପରିସ୍ଥିତି ଏତେ ଜଟିଳରୁ ଜଟିଳତର ହେବାକୁ ବସିଲା ଯେ, ମୁଷ୍ଟିମେୟ ଇଂରେଜ ସେନା ପକ୍ଷରେ ଭାରତୀୟ ସେନାଙ୍କୁ ଦମନ କରିବା ଏକ କାଠିକର ପାଠ ହେଲା ।

ଏହିପରି ସଙ୍କଟରମ ଭିତରେ ବର୍ଦ୍ଧିତ ଲାଲକିଲ୍ଲା ଏକ ଅଶା ଆଶଙ୍କା ଓ ଉଦ୍‌ବେଗର ସ୍ଥଳ ବା କାହିଁକି ନ ହେବ, ଚେତନାଶୀଳ ବ୍ୟକ୍ତି ମାନେ ଅନୁମାନ କରି ପାରିବେ । ଭାରତ ସରକାରଙ୍କ ଅଡ଼-ଭୋକେଟ ଜେନେରାଲ ସ୍ୱତଃପ୍ରବୃତ୍ତ ହୋଇ ଲାଲ କିଲ୍ଲାର ବିଚାର-ଳୟରେ ଆମ୍ଭମାନଙ୍କର ମୁକ୍ତି ସୈନିକମାନଙ୍କର ମୁକ୍ତି ପାଇଁ ଲଢ଼ୁଥିବା ଆଇନଜ୍ଞ ମାନଙ୍କମଧ୍ୟରେ ଭୀଷଣ ତର୍ଜମା ବାକ୍ ଯୁଦ୍ଧ ଲାଗିଲା । ଅଡ଼ଭୋକେଟ୍ ଶ୍ରୀଯୁକ୍ତ ମୋହିନୀମୋହନ ମିଶ୍ର ଅଧିକ ବୟସ୍କ ନାମଜାଦା ବାରିଷ୍ଟରମାନଙ୍କ ପରି ପୋଷିତ ନ ହେଲେ କଣ ହେବ, ତାଙ୍କର ଅସାଧାରଣ ପ୍ରତିଭା ଓ ଯୁକ୍ତିର କୌଶଳହିଁ ପ୍ରଣିଧାନର ବିଷୟ ।

ମହାମାନ୍ୟ ଭାରତ ସରକାରଙ୍କ ପ୍ରୋସିକ୍ୟୁଟରଙ୍କୁ ଯେଉଁ ଜାଗ୍ର-ତମାନବନ୍ଧ ଦିଆ ଯାଇଥିଲା, ସେଥି ମଧ୍ୟରୁ ନିମ୍ନରେ ପ୍ରଦତ୍ତ କେତେକ ଦୃଷ୍ଟାନ୍ତରୁ ମୋହିନୀ ବାବୁଙ୍କ ବୁଦ୍ଧିର ପରିଚୟ ମିଳେ ।

୧—ଯଦି ଭାରତବାସୀ ଇଂଲଣ୍ଡର ଅଧୀଶ୍ୱର ହୋଇଥାନ୍ତେ ଏବଂ ଇଂରେଜମାନେ ସେମାନଙ୍କର ମାତୃଭୂମିକୁ ବିଦେଶୀ ଶାସନର ଅନ୍ୟାୟ ଅତ୍ୟାଚାରରୁ ମୁକ୍ତ କରିବା ଉଦ୍ଦେଶ୍ୟରେ ସଶସ୍ତ୍ର ବିପ୍ଳବ କରନ୍ତି, ତେବେ ଇଂଲଣ୍ଡରେ ପ୍ରତିଷ୍ଠିତ ଭାରତୀୟ ସରକାରଙ୍କ ବିରୁଦ୍ଧରେ ବିପ୍ଳବୀ ଇଂରେଜ ଦେଶ ପ୍ରେମିକଗଣ ପ୍ରାଣଦଣ୍ଡ ଲାଭ କରିବାକୁ ଚାହିଁବେ କି ?

୨—ଇଂଲଣ୍ଡକୁ ଜର୍ମାନୀ ଶାସକ ହିଟ୍‌ଲରଙ୍କ ଆକ୍ରମଣରୁ ରକ୍ଷା କରିବା ନିମିତ୍ତ, ଭାରତୀୟ ଶାସକ ଇଂରେଜ ସେନାକୁ ସମ୍ମୁଖ ଲଢ଼ୁଆ ବାହିନୀ କରି ଭାରତୀୟ ସେନାଙ୍କୁ ଘଣ୍ଟ ଘୋଡ଼ାଇ ରଖିଥିବା ଅବସ୍ଥାରେ ଯଦି ଭାରତୀୟ ଶାସକଙ୍କ ଅକ୍ଷୌହିଣି ସେନା ଜର୍ମାନୀ ସେନା ଦ୍ୱାରା ପରାସ୍ତ ହୋଇ ବାରମ୍ବାର ସହ ପଛଘୁଞ୍ଚା ଦଅନ୍ତି, ତେବେ ଇଂରେଜ ଲଢ଼ୁଆ ବାହିନୀକୁ ଶତ୍ରୁ ପାଖରେ ଆତ୍ମସମର୍ପଣ କରିବାକୁ ଛାଡ଼ିଦେଇ, ସ୍ୱଦେଶୀୟ ସେନାକୁ କୌଶଳରେ ଖସାଇ ଆଣି ଭାରତକୁ ପଳାଇ ଆସିବା ଭାରତୀୟ ଶାସକଙ୍କ ପକ୍ଷରେ ନ୍ୟାୟାନୁମୋଦିତ ହେବ କି ?

୩—ଜର୍ମାନୀ ସେନାଙ୍କ କବଳରେ ପଡ଼ିଥିବା ଇଂରେଜ ସେନାଙ୍କ ମଧ୍ୟରେ ଭାରତୀୟ ଶାସକଙ୍କ ବିରୁଦ୍ଧରେ ବିଶ୍ୱାସ ଘାତକତା, ନିମକ ହାରାମି ଓ ଜଘନ୍ୟ ନୈତିକ ଦୁର୍ବଳତାର ଅଭିଯୋଗ ଅଣାଯାଇ ନ ପାରେକି ?

୪—ପୃଥିବୀରେ ଗଣତନ୍ତ୍ରର ବଡ଼ ପଣ୍ଡା ବୋଲାଉଥିବା ଇଂଲଣ୍ଡ ସରକାର ଶାସିତ ଭାରତବାସୀଙ୍କର ସ୍ୱୀକୃତି ନ ନେଇ ଚକ୍ରଶକ୍ତି ବିରୁଦ୍ଧରେ ଭାରତର ଯୁଦ୍ଧ ଘୋଷଣା କରାଇ ଜବରଦସ୍ତି ନିରସ୍ତ୍ର ଭାରତବାସୀଙ୍କୁ ଯୁଦ୍ଧରେ ପ୍ରବେଶ କରାଇବା ଇଂରେଜ ସରକାରଙ୍କର ଅଗଣତାନ୍ତ୍ରିକ ନୀତିର ନମୁନା ନୁହେଁ କି ?

୫—ସ୍ୱାଧୀନତା ପିପାସୁ ଭାରତୀୟମାନଙ୍କର ନେତୃବର୍ଗଙ୍କ ଉପରେ ଅକଥନୀୟ ବର୍ବର ଦମନ ଲୀଳା ଚଳାଇ ବିଶ୍ୱବାସୀଙ୍କ ସମକ୍ଷରେ ଇଂରେଜ ସରକାର ପ୍ରଚାରଣାର ଆବରଣ ଭିତରେ ନିଃସ୍ୱାର୍ଥପରତା ଓ ସାଧୁ ସଚ୍ଚୋଟ ପଣିଆର ପ୍ରଚାର ଚଳାଇବା ମାନବିକତାର ଅର୍ଥ କ୍ଷୁଣ୍ଣ କରେ ନାହିଁ କି ?

ଯାହାହେଉ ଭାରତବାସୀଙ୍କ ସତ୍ କାମନାରେ ଜଗଦୀଶ୍ୱରଙ୍କ କୃପାରୁ ଅଭିଯୁକ୍ତ ସେନାଧ୍ୟକ୍ଷ୍ୟ ଓ ସୈନ୍ୟମାନେ ବଡ଼ଲାଟ ଲର୍ଡ଼ ଓ୍ୱାଭେଲଙ୍କ

ଅଦେଶରେ ପ୍ରାଣଦଣ୍ଡରୁ ମୁକ୍ତି ଲାଭ କଲେ । ସେଦିନ ପ୍ରେସିଡେଣ୍ଟ ମୋହିନୀ ବାବୁ ଓ କ୍ୟାପଟେନ ବପିନ ବାବୁଙ୍କର ଦୀର୍ଘ ପ୍ରଦର୍ଶନ ପରେ ଯେଉଁ ହାର୍ଦ୍ଦିକ ମଧୁର ମିଳନ ସଂଘଟିତ ହେଲା ଓ ଦୁଇ ବନ୍ଧୁଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁର ଧାର ଛୁଟିଲା, ତାହା ବାସ୍ତବିକ ବଡ଼ ମର୍ମସ୍ପର୍ଶୀ ।

୧୯୪୬ ଅଗଷ୍ଟ ତା ୧୬ ରିଖ ମୁସଲମାନ ଲିଗ୍‌ର ଡାଇରେକ୍ଟ ଆକ୍‌ସନ ଡେ । ଭାରତର ଭାଗ୍ୟ ରବି ଆଜି ସତେ ଅସ୍ତଗାମୀ ! ଭାରତର ଚାଳିଶ କୋଟି ନରନାରୀଙ୍କୁ ଦାରିଦ୍ର୍ୟ ଦୁଃଖ କଷ୍ଟରୁ ଉଦ୍ଧାର କରିବାକୁ ମହାତ୍ମା ଗାନ୍ଧିଙ୍କ ପରି ବ୍ୟକ୍ତିତ୍ୱର ଆବିର୍ଭାବ ହୋଇଥିଲା ଏହି ଭାରତ ବର୍ଷରେ । ଅସଂଖ୍ୟ ମୁକ୍ତସେନା ସେହି ବରିଷ୍ଠ ବ୍ୟକ୍ତିତ୍ୱର ସତ୍ୟ ଅହିଂସା ନୀତିକୁ ବରଣ କରି ନେଲେ ମୁକ୍ତି ସଂଗ୍ରାମରେ । ମାତ୍ର କତିପୟ ସୈନ୍ୟଙ୍କର ଅହିଂସା ମାର୍ଗରେ ଲକ୍ଷ୍ୟ ହାସଲ କରିବାରେ ସମ୍ପୂର୍ଣ୍ଣ ଆସ୍ଥା ନଥିବାରୁ ଅହିଂସ ବାହିନୀ ଜାତୀୟ କଂଗ୍ରେସରୁ ବିଚ୍ଛିନ୍ନ ହୋଇ ପଡିଥିଲେ ଏକ ଫରୱାର୍ଡ଼ ବ୍ଲକ୍ ବା ଅଗୁଆ ଦଳ । ସେହି ଦଳର ଗୁଢ଼ ଓ ରୂପରେଖ ଦେଇଥିଲେ ପ୍ରତିଭା ଶାଳୀ ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ପୃଥିବୀର ବିଭିନ୍ନ ଧର୍ମପନ୍ଥା ଯେ ବିଭିନ୍ନ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସମସ୍ତଙ୍କର ଲକ୍ଷ୍ୟ ଏକ । ସେହିପରି ଗାନ୍ଧିଜୀ ଓ ନେତାଜୀଙ୍କ କର୍ମଯୋଜନା ପରସ୍ପର ବିରୋଧୀ ହୋଇପାରେ, ମାତ୍ର ବିଦେଶୀ ଶାସନରୁ ଦେଶକୁ ମୁକ୍ତ କରିବାହିଁ ଉଭୟଙ୍କର ଲକ୍ଷ୍ୟ । ବିଦେଶୀୟ କ୍ରୁର ଶାସନରେ ଭାରତର ଅସ୍ଥିରୂପେ ଥିଲା, ସମ୍ବଳ, କଷ୍ଟ, ଦୁଃଖ ଓ ପତନ । ତେବେ ସଶସ୍ତ୍ର ବିପ୍ଳବ ଭାରତରେ ଅସମ୍ଭବ ବୋଲି ନେତାଜୀଙ୍କ ହୃଦବୋଧ ହେବା ସ୍ୱାଭାବିକ । ତାଙ୍କର ନେତୃତ୍ୱ ଅପେକ୍ଷାରେ ରହିଥିଲେ ସହସ୍ର ସହସ୍ର ଭାରତୀୟ ଯୁଦ୍ଧ ବନ୍ଦୀ ଜର୍ମାନୀ ଓ ବହିର୍ଦ୍ଦେଶର ରଣାଙ୍ଗନ ମଧ୍ୟରେ । କଂଗ୍ରେସର ଅହିଂସ ସେନା ଯେପରି ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀଙ୍କ ଦ୍ୱାରା ଗଠିତ ଥିଲା, ସୁଦୂର ଜର୍ମାନୀ, ବର୍ମା ଓ ସିଙ୍ଗାପୁରରେ ଆଜାଦ ହିନ୍ଦ୍ ଫୌଜ ମଧ୍ୟ ଗଠିତ ହୋଇଥିଲା ଉକ୍ତ ଧର୍ମାବଲମ୍ବୀ ଭାରତୀୟଙ୍କୁ ନେଇ ।

କିନ୍ତୁ ଇଂରେଜ ସରକାର ବସ୍ତୁତଃ ଅନୁଭବ କରିଛନ୍ତି ଭାରତର ମୁଖ୍ୟ କଂଗ୍ରେସ ଓ ମୁସଲିମ୍ ଲିଗ୍ ମଧ୍ୟରେ ଏକ ସାଧାରଣ ରାଜନୈତିକ ଐକ୍ୟ ନ ଆସିବା ପର୍ଯ୍ୟନ୍ତ ଶାସନ କ୍ଷମତା କୌଣସି ଗୋଟିଏ ରାଜନୈତିକ ଦଳ ହସ୍ତରେ ଛାଡ଼ି ଦେଇ ଯିବା ଦ୍ୱାରା ଜଟିଳତାରେ ଅସ୍ଥି ଆସିବ । ଏ ଅଭିସନ୍ଧିର ମୂଳରେ ଥିଲା କ୍ଷମତା ହସ୍ତାନ୍ତରରେ ଦୀର୍ଘ ସୂତ୍ରୀତା । ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ବିଭେଦ ସୃଷ୍ଟି କରାଇବା ଇଂରେଜ ସରକାରର ଭାରତ ଶାସନରେ ପ୍ରଧାନ କୂଟ ନୀତି ଅଟେ । ୧୯୪୫ ମସିହାରେ ବିଲାତର ନୂତନ ନିର୍ବାଚନ ଫଳରେ ଟୋରି ଦଳ ପରାସ୍ତ ହେବାରୁ ଶ୍ରମିକ ଦଳ ଶାସନ ଭାର ଗ୍ରହଣ କଲେ । ପୂର୍ବ ଚର୍ଚ୍ଚିଲ ସରକାର ଭାରତୀୟ ଗଣ ଆନ୍ଦୋଳନକୁ ଦମନ କରିବା ଫଳରେ ୧୯୪୬ରେ ଭାରତ ସାରା ବିଦ୍ରୋହ ବ୍ୟାପି ଯାଇଥିଲା । ତେଣୁ ଭାରତରେ ସଶସ୍ତ୍ର ବିପ୍ଳବ ହେଲେ ଶ୍ରମିକ ସରକାର ତାକୁ ଦମନ କରିବା ଅସମ୍ଭବ ମନେକରି ଭାରତକୁ ସ୍ୱାଧୀନତା ଦେଇ ଭାରତରୁ ଅପସରି ଯିବାକୁ ସ୍ଥିର କଲେ । ଯେତେବେଳେ ଲର୍ଡ଼ ଓ୍ୱାଭେଲ ଏକ ମଧ୍ୟବର୍ତ୍ତୀକାଳୀନ ଜାତୀୟ ସରକାର ଗଢ଼ିବାକୁ କଂଗ୍ରେସ ଓ ମୁସଲିମ ଲିଗ୍‌କୁ ଆହ୍ୱାନ କଲେ, ସେତେବେଳେ କଂଗ୍ରେସ ହିଁ ପଣ୍ଡିତ ଜବାହାରଲାଲଙ୍କ ଅଧିମୁଖ୍ୟରେ ସରକାର ଗଠନ କଲେ ଓ ଲିଗ୍‌କୁ ପ୍ରବର୍ତ୍ତାଇ ମନ୍ତ୍ରୀ ମଣ୍ଡଳରେ କେତେକ ଲିଗ ସଭ୍ୟ ଗ୍ରହଣ କଲେ । ତେଣୁ ଭାରତ ସାଧାରଣତନ୍ତ୍ର ପାଇଁ ସ୍ୱତନ୍ତ୍ର ସଂବିଧାନ ପ୍ରସ୍ତୁତ କରିବାର ଆୟୋଜନ ହେଲା । ମୁସଲିମ ଲିଗ୍‌ର ସଭାପତି ଓ ପାକିସ୍ତାନର ପିତା ମିଷ୍ଟର ମହମ୍ମଦ ଅଲ୍ଲି ଜିନ୍ନା ପ୍ରଥମେ ତ ଯୋଗ ଦେଲେ ନାହିଁ । କିନ୍ତୁ ତାଙ୍କର କଳ୍ପିତ ପାକିସ୍ଥାନକୁ କିପରି କେଉଁ ଭାବରେ ଜନ୍ମ ଦେବେ ଭାବି ଭାବି ଅତ୍ୟନ୍ତ ଉଦର ଶୂଳ ବ୍ୟଥା ଭୋଗ କରୁଥିଲେ ! ଏଣେ ଆସନ୍ନପ୍ରସବା ଭାରତ ମାତାର ଗର୍ଭଚ୍ଛେଦ ପାଇଁ ନାନା ଅସ୍ତ୍ର ଶସ୍ତ୍ରର ଝନତ୍କାର ଗଗନ ଭେଦକଲା । ପ୍ରଥମେ କଲିକତା ନଗରୀରେ, ଏହି ଧର୍ମକେନ୍ଦ୍ରର ଆବିର୍ଭାବ ଦିବସରେ ସୃଷ୍ଟି କରିବାକୁ ମହା ଭାରତୀୟ ଜାତିର ଇତିହାସରେ ଅଦୃଷ୍ଟ ପୂର୍ବ,

ଅସ୍ତ୍ରତ ପୂର୍ବ ଓ ଅନାହୂତ ପୂର୍ବ ଏକ କଳଙ୍କ କାଳିମା,—ଯାହାକୁ ସହସ୍ରାବ୍ଦୀ ମଧ୍ୟ ଶତ ଶତ କରଣଜାଳ ଦ୍ୱାରା ଦୂର କରଣରେ ଅକ୍ଷମ ।

ନା ହିନ୍ଦୁ, ନା ମୁସଲମାନ କେହି ପୂର୍ବପରି ଆଉ ସେହ-ସୌହାର୍ଦ୍ଦ୍ୟ ଶାନ୍ତ ଭୋଗ କରି ପାରିଲେ ନାହିଁ । ବିଶ୍ୱାସ ତୁଟିଗଲା, ହିଂସାର ଖର ନିଃଶ୍ୱାସ ବହିବାକୁ ଲାଗିଲା—ସଚେତ କ ପ୍ରଳୟ ଝଞ୍ଜା ! ଖଣ୍ଡା, ଛୁରୀ, ବର୍ଚ୍ଛା ଓ ବୋମା ଶତ ଶତ ହିନ୍ଦୁ ମୁସଲମାନଙ୍କର ପ୍ରାଣ ନେବାକୁ ସ୍ୱସ୍ଥାନଚ୍ୟୁତ ହୋଇ ଆସନ ଜମାଇବାକୁ ଲାଗିଲେ ହିନ୍ଦୁ ଓ ମୁସଲମାନଙ୍କ ହସ୍ତରେ । ଦୀର୍ଘ ବର୍ଷ କାଳ ଧରି ପ୍ରଥମେ କଲିକତାରେ ହିନ୍ଦୁ ମୁସଲମାନ ସଂଘର୍ଷରେ ଉଭୟ ପକ୍ଷରୁ ଅଜସ୍ର ଲୋକ କ୍ଷୟ ହେଲା । ଶତ ଶତ ନାରୀ ସ୍ୱାମୀ ଓ ସନ୍ତାନ ହରା ହେଲେ । କେତେ ଯେ ଧନ ସମ୍ପତ୍ତି ଲୁଟି କରି ନିଆଗଲା, କେତେ ଧନୀ ମାନୀ, ଦୁଃଖୀ ଦରିଦ୍ରୀ ଗୃହ ଶୂନ୍ୟ ହେଲେ, କେତେ କେତେ ଗୃହଲକ୍ଷ୍ମୀଙ୍କର ସତୀତ୍ୱ ନଷ୍ଟ ହେଲା ଓ କେତେ ଅବଳା ବାଳାଙ୍କୁ ବଳାତ୍କାରରେ କେଉଁ ଅଜ୍ଞାନ ସ୍ଥାନମାନଙ୍କୁ ନିଆଯାଇ ବଳପୂର୍ବକ ବିଧର୍ମରେ ଦୀକ୍ଷିତ କରାଗଲା ତାର ଇୟତ୍ତା ନାହିଁ । ଏହି ସାମ୍ପ୍ରଦାୟିକ ସଂଘର୍ଷ ପୂର୍ବବଙ୍ଗ, ନୋଆଖାଲି, ପଶ୍ଚିମ ପଞ୍ଜାବ ପ୍ରଭୃତିରେ ଏଡ଼େ ଭୀଷଣ ଆକାର ଧାରଣ କଲା ଯେ, ସଂପୃକ୍ତ ସରକାର ପକ୍ଷରେ ଦମନ କରିବା ଅସମ୍ଭବ ହୋଇ ଉଠିଲା । କାରଣ ବୋଧହୁଏ ଆଇନ୍ଗତ ର ଅଭାବ । ଶେଷକୁ ମହାତ୍ମା ଗାନ୍ଧୀ ପଦ ବ୍ରଜରେ ନୋଆଖାଲି ଓ ପୂର୍ବ-ବଙ୍ଗରେ ଗ୍ରାମେ ଗ୍ରାମେ ବୁଲି ଜାତି ଧର୍ମ ନିର୍ବିଶେଷରେ ଶାନ୍ତିବାର୍ତ୍ତା ପ୍ରଚାର କଲେ । ସବୁ ସମ୍ପ୍ରଦାୟର ଲୋକେ ତାଙ୍କୁ ଭକ୍ତି ଓ ସମ୍ମାନ ସହ ଅଭ୍ୟର୍ଥନା କଲେ । ତାଙ୍କର ଉପଦେଶ ପାଳିଲେ, କେତେକ ବାସ୍ତୁହରା ସ୍ୱ ସ୍ୱ ସମ୍ପତ୍ତି ଫେରସ୍ତ ପାଇଲେ, ହଁ, କିନ୍ତୁ ଚକ୍ରୀମାନଙ୍କର ଗୁପ୍ତ ଉତ୍ତେଜନା ସୃଷ୍ଟି ହେତୁ ଦୁର୍ବୃତ୍ତ ଗୁଣ୍ଡାମାନେ ଗାନ୍ଧିଜୀଙ୍କର ପ୍ରତ୍ୟାବର୍ତ୍ତନ କରିବା ପରେ ପରେ କେତେକ ସ୍ଥାନରେ ପୁଣି ହତ୍ୟା, ନାରୀହରଣ ଓ ଲୁଟତରାଜ ଚଳାଇଲେ ।

ଏହିପରି ଭୟ ଓ ଆଶଙ୍କାରେ ବାୟୁମଣ୍ଡଳ ମଧ୍ୟରେ ଆହତ, ବୁଭୁକ୍ଷୁ ଓ ନିରାଶ୍ରୟମାନଙ୍କର ସେବା ପାଇଁ ଭାରତର ବଶିଷ୍ଟ ସେବା

ମନୋଜ୍ଞଭାଷଣ ବ୍ୟକ୍ତି ଓ ଗୋଷ୍ଠୀମାନଙ୍କର ଆବେଗପୂର୍ଣ୍ଣ ନିବେଦନରେ କେତେ ସ୍ୱେଚ୍ଛା ସେବକ, ଡାକ୍ତର ଓ ନର୍ସଙ୍କ ସେଥି ସବୁ ଉପଦ୍ରୁତ ଅଞ୍ଚଳରେ ସେବା କାର୍ଯ୍ୟ ଚଳାଇଲେ ।

ସେତେବେଳକୁ ଅମର ଲେଖକ ସର୍ଜନ ପ୍ରେମଲତା ମହାନ୍ତିଙ୍କର ଭ୍ରାମ୍ୟମାନ ଚିକିତ୍ସାଳୟ ଓଡ଼ିଶାରେ ବଡ଼ ସୁଖ୍ୟାତି ଅର୍ଜନ କରିଥାଏ । ପୂର୍ବବଙ୍ଗର ଦୁଃସ୍ଥ ପରିବାରମାନଙ୍କର ସାହାଯ୍ୟାର୍ଥେ ଭାରତ ସେବକ ସଂଘର ନିର୍ଦ୍ଦେଶରେ ସେଠାରେ କାର୍ଯ୍ୟ କରି ପ୍ରେମଲତା ଓ ବାସନ୍ତୀ ମଧ୍ୟ ବେଶ୍ ସୁନାମ ପାଇଲେଣି । ଅନେକ ସମୟରେ ସମ୍ବାଦ ପତ୍ରରେ ପୂର୍ବବଙ୍ଗ ପଳାତକମାନଙ୍କର ପୁନର୍ବସତି ସମ୍ବନ୍ଧରେ ବହୁତ କଥା ବାହାରୁ ଥାଏ ।

ଦିନେ ଓଡ଼ିଶାର ବିଖ୍ୟାତ ଦୈନିକ ସମାଜରେ ପ୍ରକାଶ ପାଇଲା ନିମ୍ନ ସମ୍ବାଦଟି ।

ଓଡ଼ିଶାର ଦୁଇଜଣ ବିଶିଷ୍ଟ ନାରୀକର୍ମୀ ଦୁର୍ବୃତ୍ତ ସମ୍ପ୍ରଦାୟବାଦୀଙ୍କ ଦ୍ୱାରା ହରଣଚାଲ ।

କଲିକତା—୧୦-୯-୪୭ ଓଡ଼ିଶାର ପ୍ରେମଲତା ମହାନ୍ତି ନାମ୍ନୀ ଜଣେ ଲେଡ଼ି ସର୍ଜନ ଓ ତାଙ୍କର ସହକର୍ମୀଣୀ ଧାତ୍ରୀ ବାସନ୍ତୀ ଦେବୀ ପ୍ରାୟ ଏକମାସ ହେବ ନୋଆଖାଲିର ଉପଦ୍ରୁତ ଅଞ୍ଚଳରେ ଭାରତ ସେବା ସଂଘ ଅଧୀନରେ କାର୍ଯ୍ୟ କରୁଥିଲେ । କେତେକ ଦୁଃସ୍ଥ ପରିବାରରେ ସାମ୍ପ୍ରଦାୟିକ ଗଣ୍ଡଗୋଳରେ ଆହତ ହୋଇଥିବା ଲୋକ-ମାନଙ୍କର ଚିକିତ୍ସା କରି ସେମାନେ ଲୋକପ୍ରିୟ ହୋଇ ପାରିଥିଲେ । ବଡ଼ ଦୁଃଖର ବିଷୟ ତା ୮ । ୯ । ୪୭ ରିଖରେ ସେମାନେ ସୂର୍ଯ୍ୟାସ୍ତ ପୂର୍ବରୁ ସେବା ଶିବିରକୁ ଫେରୁଥିବା ସମୟରେ ଦୁର୍ବୃତ୍ତମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ କୌଣସି ଅଜ୍ଞାତ ସ୍ଥାନରେ ଅବରୋଧୀ ହୋଇ ଥିବାର ଅନୁମିତ ହୁଏ । ସେବା ଶିବିରର ସମ୍ପାଦକ ଶ୍ରୀ ରମନ ଲାଲ ଚଟ୍ଟୋପାଧ୍ୟାୟ

ବିଶେଷ ଅନୁସନ୍ଧାନ ପାଇଁ ପୋଲିସ ଓ ସଂପୃକ୍ତ ସରକାରମାନଙ୍କୁ ଜଣାଇ ଆଶୁ ପ୍ରତିକାର ଲୋଡ଼ିଛନ୍ତି ।

ଏହି ଶୃଙ୍ଖଳାକର ସମ୍ବାଦ ଦୈନିକ ପତ୍ରିକାରୁ ଅବଗତ ହୋଇ ମୋହିନୀ ବାବୁ ସ୍କୁଲଙ୍କର ଅଣ କରେଣ୍ଟ କାର୍ଯ୍ୟରେ ମନ ଲାଗିଲା ନାହିଁ । ନିଜମାନଙ୍କର ମୋକଦ୍ଦମାରେ ମହଲତ ନେବାପାଇଁ କାଗଜରେ ସ୍ୱାକ୍ଷର କରି ମୋହୁରିରଙ୍କୁ ଦେଇ ଦେଲେ । ଖଣ୍ଡିଏ ସାଇକେଲ୍ ରିକ୍ସା କରି ସଙ୍ଗେ ସଙ୍ଗେ ବିବେକାନନ୍ଦ ବାବୁଙ୍କ ଘରକୁ ଆସିଲେ । ଏ ସମ୍ବାଦରେ ଡାକ୍ତର ବାବୁଙ୍କ ଘରର ସମସ୍ତେ ଦୁଃଖ ଶୋକରେ ବୁଡ଼ି ରହିଥିବାର ଦେଖି ସବୁ ବିଷୟ ଠଉରେଇ ନେଲେ । ବିପିନ ବାବୁଙ୍କ ମା ମୋହିନୀ ବାବୁଙ୍କୁ ଦେଖି ଅଧୀର ହୋଇ ପଡ଼ିବାରୁ ମୋହିନୀ ବାବୁ ବ୍ୟସ୍ତ ସମସ୍ତ ହୋଇ ତାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲେ । ଉଚ୍ଚ ଶିକ୍ଷିତ ବାବୁମାନଙ୍କ ପକ୍ଷରେ କିଂକର୍ତ୍ତବ୍ୟବିମୂଢ଼ ହେବା ଲଜ୍ଜାର ବିଷୟ ହେବ । ତେଣୁ ତୁରନ୍ତ ବୁଦ୍ଧି ପରିଚାଳନା କରି ବିପିନ ବାବୁ, ମୋହିନୀ-ବାବୁ, ଡାକ୍ତରବାବୁ ଓ ଅନ୍ନପୂର୍ଣ୍ଣା ଦେବୀ ମିଳିମିଶି ଉପାୟ ସ୍ଥିର କଲେ ଯେ, ମୋହିନୀ ବାବୁ ଓ ବିପିନ ବାବୁ ସେହି ଦିନ ସନ୍ଧ୍ୟା ଏକ୍ସପ୍ରେସରେ କଲିକତା ଯିବେ । ସେମାନେ ଅପହୃତା ନାରୀ ଦୁହିଁ-ଙ୍କର ଅନୁସନ୍ଧାନରେ ବାହାରିଛନ୍ତି ବୋଲି କଲିକତା ପ୍ରେସିଡେନସି ମାଜିଷ୍ଟ୍ରେଟଙ୍କୁ ସେହି ମର୍ମରେ ଏକ ଦରଖାସ୍ତ କରି ଦରକାର ପଡ଼ିଲେ ପୋଲିସର ସାହାଯ୍ୟ ସେମାନଙ୍କୁ ଦିଆଯିବା ପାଇଁ ପ୍ରାର୍ଥନା ମଧ୍ୟ କରିବେ ।

କାର୍ଯ୍ୟର ଯୋଜନା ଅନୁଯାୟୀ ଦୁଇଜଣ, କଲିକତାରେ ପହଞ୍ଚି ଅନୁସନ୍ଧାନ—ଅଭିଯାନରେ ବାହାରିବା ପୂର୍ବରୁ ଦୁଇଗୋଟି ପିସ୍ତଲ, କେତେକ ମୁସଲମାନୀ ପୋଷାକ ଓ ଦୁଇଗୋଟି ଚମଡ଼ା ବ୍ୟାଗରେ ଛୁରୀ, କଇଁଚି, ତାଲା, ସ୍ୱବ, ଚଷମା, ସୂତା, ଫିତା, ସାବୁନ ଚିରୁଣୀ ଆଦି ମନୋହାରୀ ଜିନିଷ ସେମାନଙ୍କୁ କିଣି ଭର୍ତ୍ତି କରିବାକୁ ପଡ଼ିଥିଲା । ମୋହିନୀ ବାବୁ ଉଚ୍ଚତାରେ ଛୋଟ ଥିବାରୁ ନିଜକୁ ସ୍ତ୍ରୀ ବେଶରେ ସଜ୍ଜିତ କଲେ—

କିନ୍ତୁ ସେ ଆମ ଦେଶର ସ୍ତ୍ରୀ ନୁହନ୍ତି ଯେ, କେହି ବସ୍ତ୍ର ଖୋଲି ଦେଖି ପକାଇବ ଭୟରେ ଏପରି ସୁନ୍ଦରୀ ଯୁବତୀ ଦେଖାଯାନ୍ତି । ବିପିନ ବାବୁ ଉପସ୍ଥିତ କାର୍ଯ୍ୟର ଗୁରୁତ୍ୱ ଦୃଷ୍ଟିରୁ ଗୋଟିଏ ଇସ୍ଲାମୀ ଯୁବକ ସାଜିଲେ । ଅଜଣାଲୋକେ ସେମାନଙ୍କୁ ସ୍ୱାମୀ ସ୍ତ୍ରୀ ବ୍ୟତୀତ ଅନ୍ୟ କିଛି ଠଉରେଇବା ଅସମ୍ଭବ । କଲିକତାଠାରୁ ସେମାନେ ଟିପେରା, ଚାନ୍ଦପୁର ଓ ନୋଆଖାଲି ଅଞ୍ଚଳମାନଙ୍କୁ ଆସି ଖାସ ବୁଲିବାକୁ ଲାଗିଲେ । ରାତିରେ ସେମାନଙ୍କୁ କୌଣସି ନା କୌଣସି ସରାଇ କିମ୍ବା ଧର୍ମଶାଳାରେ ରହିବାକୁ ପଡ଼ୁଥାଏ ଏବଂ ଖିଆ ପିଆ ହୋଟେଲରେ କରିବାକୁ ପଡ଼େ । କୌଣସି ନିର୍ଦ୍ଦିଷ୍ଟ ଦ୍ରବ୍ୟ ଜନୀଦ୍ୱାରା ଖତମ ହୋଇଗଲେ, ସହର କିମ୍ବା ଭଣ୍ଡାରରୁ ପୁଣି ସେମାନଙ୍କୁ ସେହି ଜିନିଷ କିଣିବାକୁ ପଡ଼ୁଥାଏ । ଏହାପରେ ସେମାନେ ଖାଣ୍ଟି ବ୍ୟବସାୟୀ ବନାଇଗଲେ ।

ନୋଆଖାଲିରେ ପହଞ୍ଚିବା ଦିନଠାରୁ ପ୍ରାୟ ଦୁଇ ତିନି ସପ୍ତାହ ଗତ ଗଲଣି । ଜିନିଷ ମଧ୍ୟରେ ବା ଅନ୍ୟ ଲୋକମାନଙ୍କ ସହିତ କଥାବାର୍ତ୍ତା କଲାବେଳେ ସେମାନଙ୍କଠାରୁ କୌଣସି ଓଡ଼ିଆ କଥା ଶୁଣାପାଇବା ଏକ ପ୍ରକାର ସ୍ୱପ୍ନ କହିଲେ ଚଳେ । ବରଂ ଖରିଦ ଦାର ସହିତ ଜିନିଷର ଦର ତୁଟାଇଲାବେଳେ ଇସ୍ଲାମୀ ଭାଷା ସଙ୍ଗେ ଦସ୍ତେଷ୍ଟି ବଙ୍ଗଳା କଥା ମିଶିଥିବା ଜଣାପଡ଼େ । ତେବେ ସେମାନେ ଚାଲଢଙ୍ଗୀ ଏପରି ନିଖୁଣ ରଖିପାରୁଥିଲେ ଯେ, କୌଣସି ଗୁଇନ୍ଦା ପୁଲିସ ବାପାର ସାଧ୍ୟ ନାହିଁ ମଧ୍ୟ ସନ୍ଦେହ କରିବାକୁ ।

କେତେ ଗ୍ରାମ, କେତେ ଟୋଲା, କେତେ ରାସ୍ତା ଘାଟ, ବଚ୍ ବଜାରର ନିସ୍ତବ୍ଧ ସେମାନେ ବୁଲୁଛନ୍ତି । ଚା ଦୋକାନ ମଦଖଟି, ଜୁଆ ଅଡ୍ଡା, ଏପରିକି ବେଶ୍ୟା ନଟୀଏଙ୍କର ଆଡ୍ଡାରେ ପାଇଭାଗି କରି ବୁଲିଲେଣି, କିନ୍ତୁ କୌଣସିଠାରେ ସେମାନଙ୍କର ଅଭିପ୍ରେତ ବ୍ୟକ୍ତି-ମାନଙ୍କର ଠିକ ପାଇ ନାହାନ୍ତି । ଯେତେ କଷ୍ଟ ସହନ୍ତୁ ନା କାହିଁକି ସେମାନଙ୍କର କିନ୍ତୁ ଧୈର୍ଯ୍ୟ ଚ୍ୟୁତ ହୋଇ ନାହିଁ । "ଯତ୍ନକଲେ ରତ୍ନ

ମିଳେ''—ଏହି ନୀତି ବାକ୍ୟ ବୋଧହୁଏ ସେମାନଙ୍କ ସ୍ମୃତିପଟରୁ ପୋଛି ହୋଇ ଯାଇନାହିଁ ।

ନୋଆଖାଲିର ବସନ୍ତପୁର ଥାନା ଏକ ମୁସଲମାନ ଅଧ୍ୟୁଷିତ ଅଞ୍ଚଳ । ସ୍ଥାନଟି ଏକ ପ୍ରକାର ଛୋଟକାଟ ଧରଣର ସହର, ଦୋକାନ ବଜାରରେ ଭରପୁର । ସାମାନ୍ୟ କେତେକ ହିନ୍ଦୁ ବସ୍ତି ଦେଖିବାକୁ ମିଳେ । ତଥାପି ଗୃହ ଗୁଡ଼ିକର ପରିସ୍ଥିତି ଓ ଗୃହସ୍ଥମାନଙ୍କର ଚାଲିଚଳଣି ଦେଖିଲେ, ହିନ୍ଦୁ ମୁସଲମାନ ମଧ୍ୟରେ କୌଣସି ବୈର ଭାବ ଥିଲା ପରି ଜଣାପଡ଼େ ନାହିଁ । କେବଳ ଅବିଶ୍ୱାସ ବିଷାକ୍ତ ବାୟୁ ମଣ୍ଡଳ ହେତୁ ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ସନ୍ଦେହର ଆଭାସ ବହୁତ ମିଳେ । ଏଠାରେ ଗୋଟିଏ ଓସମାନିଆ ସରାଇ ଅଛି । ଆମର ଛଦ୍ମ ବେଶଧାରୀ ତଥାକଥିତ ଇରାନୀ ଦମ୍ପତି ସେହିଠାରେ ଅବସ୍ଥାନ କରିବାକୁ ଲାଗିଲେ ।

ଦିନେ ବଜାରରେ ବୁଲି କାରବାର କରୁଥିବା ବେଳେ ଗୋଟିଏ ସିନେମା ପୋଷ୍ଟର ଛବି ସେମାନଙ୍କର ଦୃଷ୍ଟି ପଡ଼ିଲା । ମନସ୍ଥ କଲେ ସେ ଦିନ ସେମାନେ ସିନେମା ଦେଖିବାକୁ ଯିବେ । ''ଏ ମନ କରୁଥାଇ ଯାହା, ଭାଲେ ପ୍ରାପତ ହୁଏ ତାହା ।''

ସ୍ଥାନୀୟ ଅରୁ ଲକ୍ଷର ସିନେମା ହଲ୍‌ରେ ସେମାନେ ବସି ଦିଲ୍‌ କା କାହାନୀ'' ଚିତ୍ରଟି ଦେଖି ବେଶ୍ ମସଗୁଲ୍ ହୋଇ ରହିଛନ୍ତି । ସିନେମା ହଲଟି ଦର୍ଶକମାନଙ୍କ ଦ୍ୱାରା ଭରପୁର ହୋଇଅଛି । ଇଣ୍ଟର-ଭାଲ୍ ବା ବିଶ୍ରାମର ଘଣ୍ଟି ବାଜିଲା । ଦର୍ଶକମାନଙ୍କ ମଧ୍ୟରୁ କେହି କେହି ପରିସ୍ରା କରିବାକୁ ବା କେହି ସିଗାରେଟ୍ ବା ଜଳପାନ କରିବା ଉଦ୍ଦେଶ୍ୟରେ ବାହାରକୁ ଗଲେ । ସେକେଣ୍ଡ କ୍ଲାସର ସବୁ ପଛ ଧାଡ଼ିରେ ସେମାନେ ଦୁଇଜଣ ଦୀର୍ଘକାୟ ଅତ୍ୟନ୍ତ ଶ୍ମଶ୍ରୁଧାରୀ ମୁସଲମାନ ଯୁବକଙ୍କୁ ଦୁଇଟି ଅର୍ଦ୍ଧ ଅବଗୁଣ୍ଠନବତୀ ରମଣୀଙ୍କର ଉଭୟ ପାର୍ଶ୍ୱରେ ବସିଥିବାର ଦେଖିବାକୁ ପାଇଲେ । ବର୍ତ୍ତମାନ ଇରାନୀ ଯୁବକଙ୍କ ମୁହଁ

ମଣ୍ଡଳରେ ଏକ ଅପୂର୍ବ ପୁଲକ ଖେଳିଗଲା ପରି ବୋଧ ହେଲା । ତାଲେ ସେମାନେ କୌଣସି ଅବସ୍ଥାରେ ଲକ୍ଷ୍ୟବାଣର ସନ୍ଦେହ-ପାତ୍ର ହୋଇ ପାରନ୍ତି, ତନିମିତ୍ତ କଣି ଶୁଣି ପଶ୍ଚାତକୁ ବାରମ୍ବାର ଚାହିଁବାର ଉତ୍କଣ୍ଠା ସେମାନଙ୍କର ନାହିଁ ।

ଯୁବତୀ ଯୁଗଳ ମଧ୍ୟ ଏହି ନବାଗତ ଦମ୍ପତିଙ୍କ ମଧ୍ୟରୁ ଅନ୍ତତଃ ପୁରୁଷଟିର ରୂପ ଓ ଠାଣିରୁ ସେମାନଙ୍କର ଅନୁସନ୍ଧାନୀ ବୋଲି ସ୍ଥିର ନେଲେଣି । ତା ନ ହୋଇଥିଲେ ଅପେକ୍ଷାକୃତ ସୁଶ୍ରୀ ଯୁବତୀଟି ତାହାର ରୁମାଲ ଦ୍ୱାରା ମୁହଁ ପୋଛିବା ବାହାନାରେ ବାରମ୍ବାର ଅଙ୍ଗୁଳି ସଞ୍ଚାଳନ ଦ୍ୱାରା କିପରି ଗୋଟିଏ ସଙ୍କେତ ଦେବାର ବୋଧ ହେଉଛି ତାହା କି ? ଏଥର ଅନୁସନ୍ଧାନୀ ଦ୍ୱୟ ସେମାନଙ୍କର ଅନୁମାନକୁ ଦୃଢ଼ୀଭୂତ କରିନେଲେ ।

ସିନେମାର ଖେଳ ସମାପ୍ତ ହେଲା । ଦର୍ଶକମାନେ ଗୃହାଭିମୁଖରେ ଚାଲିଲେ । ଛଦ୍ମବେଶୀ ଦମ୍ପତି ଉଭୟମାନ ସେମାନଙ୍କର ଲକ୍ଷ୍ୟ ହାସଲ କରିବା ଉଦ୍ଦେଶ୍ୟରେ ଯୁବକ ଯୁବତୀ ଚତୁଷ୍ଟୟଙ୍କ ପିଛା ଧରି ଚାଲିଲେ ଓ ସେମାନଙ୍କର ସଠିକ ଅବସ୍ଥାନ ନିରୂପଣ କରି ଫେରି ଆସିଲେ ସରାଇକୁ ।

ଉଭୟଙ୍କ ଦ୍ୱୟଙ୍କ ମଧ୍ୟରେ ଚାଲିଲା ଗୁପ୍ତ ଆଲୋଚନା ଭବିଷ୍ୟତ କାର୍ଯ୍ୟପନ୍ଥା ନେଇ । ଏହି ଘଟଣା ସମୟକୁ ମହାତ୍ମା ଗାନ୍ଧୀ ନୋଆଖାଲିର ବେଗେମଗଞ୍ଜ ଅଞ୍ଚଳରେ ଗସ୍ତରୁ ଫେରି ଆସି ଶ୍ରୀରାମପୁର ସେବା ଶିବିରରେ ଅବସ୍ଥାନ କରୁଥିଲେ । ମଦାନ୍ଧ ଦୁର୍ବୃତ୍ତଙ୍କ ଷଡ଼ଯନ୍ତ୍ରରେ ମୁସଲମାନ ଜନତା'ର ଗାନ୍ଧିଜୀଙ୍କ ପ୍ରତି ଦୁର୍ବ୍ୟବହାର ଆଶଙ୍କା କରି ପୂର୍ବ ବଙ୍ଗଳ ପ୍ରଧାନ ମନ୍ତ୍ରୀ ସୁରାବର୍ଦ୍ଦୀ ତାଙ୍କ ସଙ୍ଗେ ସଙ୍ଗେ ଥାନ୍ତି । ସେମାନଙ୍କ ଦୃଷ୍ଟି ଗୋଚରକୁ ଉପସ୍ଥିତ ଘଟଣା ଆସିବା ବିଷୟରେ ମଧ୍ୟ ଆଲୋଚନା କରା ଯାଇଥିଲା । ମାତ୍ର ଉପଯୁକ୍ତ ସମୟ ନ ଆସିବା ପର୍ଯ୍ୟନ୍ତ ସେମାନଙ୍କର କାର୍ଯ୍ୟ କ୍ରମର ରହସ୍ୟ ଭେଦ ଯେପରି ନ ହୁଏ, ସେଥିପାଇଁ ଉପସ୍ଥିତ ବିଷୟକୁ ବିଜ୍ଞାନ ପୁଅ କରାଗଲା ନାହିଁ ।

—୦—

# ଏକାଦଶ ପରିଚ୍ଛେଦ

'ନୁର ମହଲ୍'ର ନା ନାମଜାଦା ସ୍ୱେର ଡକାୟତମାନଙ୍କ ମଧ୍ୟରେ ସିନା ନାଁଡାକ, ଉଷ ବୋଲି ସଭ୍ୟ ଲୋକେ ବା ଜାଣିବେ କେମିତି ? କେତେକ ବୁଢ଼ା ବୁଢ଼ୀ ଲୋକ କହନ୍ତି, ସେ ନା ଶୁଣି କେତେକ ଗର୍ଭିଣୀ ମାଇପିଙ୍କ ପେଟରୁ ପିଲା ଖସି ପଡ଼ିଥିଲା ! ତେଣୁ ସିଆଣିଆ ଲୋକେ ଜାଣି ଶୁଣି ତାର ନାଁ ମାଇପି ପିଲାଙ୍କ ଆଗରେ ଡକାନ୍ତି ନାହିଁ । ବସନ୍ତପୁର ଥାନା ପାଖରୁ ଏପଟ ଭଟ୍ଟ ଉପୁଜାଉଥିବା ନଇଟିଏ ଘରଟି ପ୍ରାୟ ଦୁଇ ମାଇଲ ଖଣ୍ଡେ ଦୂରରେ ହେବ । ଥାନଟା ତ ଜଙ୍ଗଲିଆ ସହଜେ, ବାହୁଁକି ନା, ଗଛରେ ବୃନ୍ଦ, ଜଳକୁ ମୀନ, ପର୍ବତକୁ ଝରଣା ଯେମିତି ଶୋଭା, ସେମିତି ଲଟା ଜଙ୍ଗଲକୁ ନୁର-ମହଲଟି ଶୋଭା । ଆମ ଇଂରେଜୀ ପଢ଼ୁଆମାନେ କହନ୍ତି "Face indicates the mind," ଅର୍ଥାତ୍ ଗାଁ ପଦ୍ମମଳ ଧୋବା ଲୁଗାରୁ ଜଣା ପଡ଼େ । ବୋଇଲି କିନା, "ଲୋକ ଲୋଚନ ଅଗୋଚରେ, ଲୁଞ୍ଚନ୍ତି ସୁଖ ଦୁଃଖ ନରେ" ଶିକ୍ଷିତ ବାବୁଭାୟାମାନେ ସଂସାର ଦୁଃଖ ଜଞ୍ଜାଳରୁ ଟିକିଏ ଶାନ୍ତି ହୋଇ ଆରାମ ନେବାକୁ Picnic Garden party ମାନେ କଣ ଖୋଜି ଉଦ୍ୟାନ ଖୋଜି ଅବ ଭବ ସୁଖ ଖୋଜନ୍ତି । ଅଉ କୁଶିକ୍ଷିତ, କୁଳଟ, କୁପଥଗାମୀଙ୍କର କଣ ସୁଖ ଦୁଃଖ ନାହିଁ ? ଯୋଗୀ ବଇରାଗୀ ଜପ ତପ ସୁଖ ପାଇଁ ଅଗ୍ନାଅଗ୍ନି ବନସ୍ତ ଲୋଡ଼ନ୍ତି । ଝଣ୍ଟି, ସ୍ୱେର, ବଦମାସ ମଧ୍ୟ ଅନ୍ଧାକୁପ ଝାଡ଼ ଜଙ୍ଗଲରେ ତାଙ୍କର ବେଉସାର ଆଡ୍ଡା ବସେଇ ଥାନ୍ତି । ଆମର ବର୍ଣ୍ଣିତ 'ନୁରମହଲ୍'ଟି ସେହିପରି ଗୋଟିଏ ଡକାୟତ ଆଡ୍ଡା ।

ଦକଡ଼ାକୁ ଗୋଲପାଣି ସୁହାଏ । ସାମ୍ରାଦାୟିକ ଗଣ୍ଡଗୋଳରୁ ଫାଇଦା ଉଠାଇବା ପାଇଁ ମନ୍‌ସୁର ଅଲ୍ଲି ଓ ମକବୁଲ ଖା ବହୁ ଦିନରୁ ଯାକା ପଡ଼ିଥିବା ଏହି ଘରଟିରେ ଭଣ ମଧ୍ୟରେ ଆଡ୍ଡା ଜମେଇ ଦେଇଛନ୍ତି । ଏ ଦୁଇଜଣ ଭିନ୍ନ ଭିନ୍ନ ଦେଶରେ ଖୁଣ୍ଟ, ଜନାବାସ

ଓ ଦଙ୍ଗାବାଜ ମାମଲାରେ ସ୍ବପକ୍ଷ ହୋଇ ସାତ ଆଠ ଥର ମାମୁଁଘର ଦେଖି ଆସିଛନ୍ତି । ସମ୍ପ୍ରତି ସାମ୍ପ୍ରଦାୟିକ ଦଙ୍ଗା ଉକ୍ତ ନ ହେଉଣୁ ସେମାନଙ୍କର ଖୋଲିଯାଇଛି ଏକ ବ୍ୟବସାୟ । ଉପଦ୍ରୁତ ଅଞ୍ଚଳରୁ ବହୁ ଧନ ସମ୍ପତ୍ତି ଲୁଟିକରି ଆଣି ଏହି ନୂଆ ମହଲର ଗୋଟିଏ ନିସନ୍ଧି ଘରେ ଜମା କରି ରଖିଛନ୍ତି ଏମାନେ । ଖାଦ୍ୟ ପଦାର୍ଥର ମଧ୍ୟ ଏଠାରେ ଅଭାବନାହିଁ । ମଉଜ ମଜଲିସ୍‌ର ଯାବତୀୟ ଉପକରଣ ଦେଖିବାକୁ ମିଳେ ଏଠାରେ । ଯେଉଁ ଦିନ ପ୍ରେମଲତା ଓ ବାସନ୍ତୀ ଅପହୃତା ହେଲେ, ଏମାନେ ସେ ଦିନ ଜଣେ ନିସ୍ବସ୍ବର ଗୃହରେ ଗୋଟିଏ ଧର୍ଷିତା ନାରୀର ଆସନ୍ନ-ମୃତ୍ୟୁ ଅବସ୍ଥା ଲକ୍ଷ୍ୟ କରିବାକୁ ଓ ଯଥା ସମ୍ଭବ ଔଷଧ ପ୍ରୟୋଗ କରି ତାହାର ପ୍ରାଣ ରକ୍ଷା କରିବାକୁ, ଏହି ଦୁଇ ରମଣୀଙ୍କୁ ଡାକି ନେଇ ଗୋଟିଏ ଟ୍ୟାକ୍‌ସିରେ ବସାଇ ନେଇ ଆସିଗଲେ । ସେମାନଙ୍କୁ ଏହି ନୂଆ ମହଲରେ ଏକ ପ୍ରକାର ବନ୍ଦୀ କରି ରଖାଗଲା । ଦୈନନ୍ଦିନ ଚଳାଚଳ ପାଇଁ ତ ସମସ୍ତ ପଦାର୍ଥ ଏଠାରେ ଗଚ୍ଛିତ ଅଛି । ସେମିତି ଦରକାର ପଡିଲେ ଜଣେ ଏମାନଙ୍କର ମାରଫତଦାର ହୋଇ ରହେ ଓ ଅନ୍ୟ-ଜଣେ ସଉଦା ପତ୍ର କରିବାକୁ ବଜାରକୁ ଯାଏ । ନୂଆ ମହଲର ଦ୍ବାର ଦ୍ୱାରରେ ସର୍ବଦା ଆଗ ଓ ପଛ ଏତେ ଉଚ୍ଚ ଓ ଦୁସ୍ସେହ୍ୟ ଯେ, ବାହାର କେହି ଲୋକ ଭିତରର ଘଟଣା ଜାଣି ପାରିବ ନାହିଁ କିମ୍ବା ଗୃହରେ ପ୍ରବେଶ କରିବାକୁ ସାହସ କରିବ ନାହିଁ । ବାହାରୁ ଓ ଭିତରୁ ତାଲା ପକାଇବାର କାଇଦା କେବଳ ସେ ଦୁହିଁଙ୍କୁ ହିଁ ମାଲୁମ । ଯେଉଁ ଲୋକ ଘର ଜଗିରହେ, ସେ ସେଇବାସ ଓ ବନ୍ଧୀମାନଙ୍କର ହାଲ ହକିକତ ବୁଝିବା ଭାରରେ ଥାଏ ।

ଅସହାୟା ରମଣୀ ଦ୍ୱୟଙ୍କୁ କେତେ ବାର ଭୟଭୀତା କରା ହୋଇଛି । ନରକଙ୍କାଳରେ ଶୋଭିତ ଗୋଟିଏ ଗୁପ୍ତ କକ୍ଷକୁ ଏମାନଙ୍କୁ ନିଆଯାଇ କୁହା ଯାଇଛି, "ଯଦି ତୁମ୍ଭେମାନେ ଆମ ଦୁହିଁଙ୍କୁ ବିବାହ ନ କର ଓ ଆମର ଚୌର୍ଯ୍ୟ ବୃତ୍ତିରେ ସାହାଯ୍ୟ ନ କର, ତେବେ

ତୁମ୍ଭମାନଙ୍କୁ ଏହି କଙ୍କାଳମାନଙ୍କର ଅବସ୍ଥା ଦେଖିବାକୁ ପଡ଼ିବ । ତୁମ୍ଭମାନଙ୍କୁ ଅନ୍ତିମ ପନ୍ଦର ଦିନ ମହୁଲତ ଦିଆଗଲା । ଏହି ଅବସର ପରେ ତୁମ୍ଭମାନଙ୍କର ସମ୍ମତି ଜଣାଇବ ।" ଦସ୍ୟୁ ଦ୍ୱୟ ମନୁଷ୍ୟ ସତ କିନ୍ତୁ ସେମାନଙ୍କର ପ୍ରକୃତି ଚୋଟିଏ ଗୋଟାଏ ଜାନୁଆରର ।

ନିର୍ଦ୍ଦିଷ୍ଟ ଦିବସ ପରେ ରମଣୀମାନଙ୍କଠାରୁ କୌଣସି ସମ୍ମତି ମିଳିଲା ନାହିଁ । ଏଣେ ଦସ୍ୟୁମାନେ ମଧ୍ୟ ଅସ୍ଥିର ହୋଇ ଉଠିଲେଣି । ବିଶେଷତଃ ନିଆଁ ପାଖେ ଘିଅ ତରଳିବା, ଘିଅର ଗୋଟାଏ ସ୍ୱାଭାବିକ ଗୁଣ । ଏହି ନୀତିର ବଶବର୍ତ୍ତୀ ହୋଇ ଦସ୍ୟୁ-ମାନଙ୍କର କାମ ଉତ୍ତେଜନା ଉଦ୍ଭୂତ ହୋଇଛି । ତେଣୁ ନାନାଭାବେ ସେହି ନାରୀମାନଙ୍କର ସମ୍ମୁଖରେ ପ୍ରେମର ସମ୍ଭାର ବାଢ଼ିବାକୁ ସେମାନେ ପ୍ରସ୍ତୁତ ହୋଇଗଲେ । ଛଦ୍ମବେଶୀ ଇସ୍ତ୍ରୀମାନଙ୍କର ଦୃଷ୍ଟିରେ ଯେଉଁଦିନ ଦସ୍ୟୁ ଓ ବନ୍ଦିନୀମାନେ ପଡ଼ିଲେ, ସେଦିନ ଦସ୍ୟୁମାନେ ପ୍ରେମର ପ୍ରଥମ ପୂଜା ସାମଗ୍ରୀ କିଣିବା ପାଇଁ ଆସିଥିଲେ ସିନେମା ସଇଜକୁ । "ଲିଲ୍‌ଲା ଲାହିନୀ" ପ୍ରେମ ଓ କାମ ଉଦ୍ଦୀପକ ଏକ ନଗ୍ନଚିତ୍ର—ଯାହାକୁ ବିବାହିତ ଦମ୍ପତି ବ୍ୟତୀତ ଅନ୍ୟ କେହି ଦେଖିବା ଉଚିତ ନୁହେଁ । ଜୀବନ ଓ ସତୀତ୍ୱ ଲୁଣ୍ଠନର ଆଶଙ୍କା ବିପନ୍ନା ଓ ବିପର୍ଯ୍ୟସ୍ତା ସ୍ତ୍ରୀ ଦୁହିଁଙ୍କର ଥିଲା କଷ୍ଟି ପଥର । ଏହି କଷ୍ଟି ପଥରରେ କଷି ହୋଇ ସେମାନେ ଖାଣ୍ଟି ସୁନାପରି ଦାଉଦାଉ ଦିଶୁଥିଲେ ସତ, ମାତ୍ର ତସ୍କରମାନେ ସୁବର୍ଣ୍ଣ ଲୋଭ ସମ୍ବରଣ କରି ପାରନ୍ତି କି ?

ପାଶବିକ ଅତ୍ୟାଚାରର ଗୋଟାଏ ଅଧ୍ୟାୟ ଖୋଲିବାକୁ ଯାଉଥିଲା, କିନ୍ତୁ ସତୀତ୍ୱର ଗୋଟିଏ ସ୍ୱତଃ ଦୁର୍ବାର ଶକ୍ତି ଅଛି, ଯାହା ଐଶୀ ଶକ୍ତି ପ୍ରତି ଏକାଗ୍ରତ ଆରାଧନାରୁ ପ୍ରାପ୍ତ ହୋଇଥାଏ । ପାଠକମାନେ ଦେଖି ପାରନ୍ତି, ଏ ଉକ୍ତି ଦୁର୍ବଳର ସମ୍ବଳ । କିନ୍ତୁ ବାସ୍ତବିକ ତାହା ନୁହେଁ । ଯେଉଁ ବ୍ୟକ୍ତିର ନୈତିକ ଚରିତ୍ର ଯେତେ ଦୃଢ଼, ସେ ସେତିକି ଦୁର ସବଳ । ପଶୁବଳ ଯୁଗେ ଯୁଗେ ନୈତିକ ବଳଠାରେ ହାର ମାନିଛି ଏବଂ ଚରିତ୍ରର ସ୍ୱଚ୍ଛ ହସ୍ତର ଯାଇ ଅନନ୍ତ ଗଗନ ଉପରେ ମର୍ତ୍ତ୍ୟ

ଭୁବନ ଅବସ୍ଥାନ କରେ, ତେବେ ବା ଏ ସ୍ୱତଃସିଦ୍ଧର ସଂଜ୍ଞା ବଦଳି ଯାଇପାରେ ! ତ୍ରିଭୁବନ ବିଜୟୀ ରକ୍ଷଃ ଶ୍ରେଷ୍ଠ ଲଙ୍କପତିର ଶକ୍ତିର ଅଧୀନ ହୋଇ ସୁଦ୍ଧା ମାନବ ଶ୍ରେଷ୍ଠ ରଘୁପତିଙ୍କର ପତ୍ନୀ ଉପରି ସେହି ସତୀତ୍ୱ ରତ୍ନକୁ ଅନାହତ ଭାବରେ ସଞ୍ଚି ରଖିଥିଲେ ? ସିନେମାକୁ ଫେରି ଦସ୍ୟୁମାନେ ନୂରମହଲର ବିଶ୍ରାମ କକ୍ଷରେ ବନ୍ଦୀମାନଙ୍କୁ ଭେଟିଲେ । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପ୍ରେମଲତାଙ୍କର ପ୍ରଣୟପ୍ରାର୍ଥୀ ହୁଅନ୍ତେ ଉଭୟ ଦସ୍ୟୁଙ୍କ ମଧ୍ୟରେ ତୀବ୍ର ବଚସା ଲାଗିଲା । ସୁରାର ମାଦକତା ସେମାନଙ୍କର ବିଚାର ଶକ୍ତିକୁ ଲୋପ କରି ଦେଇଥିଲା । ତେଣୁ କଳହରୁ ଦ୍ୱନ୍ଦ ଯୁଦ୍ଧ ଜାତ ହେଲା । ଏହି ଯୁଦ୍ଧ ଏପରି ଭୀଷଣ ଆକାର ଧାରଣ କଲା ଯେ, ସେମାନେ ପରସ୍ପରକୁ ଆଘାତ କରି ରକ୍ତ ରଞ୍ଜିତ ହେଲେ । ଏ ଦୃଶ୍ୟରେ ବନ୍ଦୀନୀମାନେ ଭୀତତ୍ରସ୍ତ ହୋଇ ଯାଇଥିଲେହେଁ, ପାଷାଣ୍ଡମାନଙ୍କ କବଳରୁ ରକ୍ଷା ପାଇବା ପାଇଁ ଏକ କୌଶଳ ପ୍ରୟୋଗ କରିବା ଉଦ୍ଦେଶ୍ୟରେ ପ୍ରେମଲତା ହେଲେ ଅଗ୍ରଭର । ତେଣୁ ସେ ପ୍ରକାଶ କଲେ, "ବାସ୍ତବରେ ତୁମ୍ଭମାନଙ୍କର ମୋ ସଙ୍ଗେ ପ୍ରଣୟ କରିବାକୁ ମନ ବଳିଥିଲେ, ମୁଁ ତାହା କରିବାକୁ ଆଦୌ କୁଣ୍ଠିତ ନୁହେଁ । କିନ୍ତୁ ହିନ୍ଦୁ ସ୍ତ୍ରୀର ଧର୍ମ, ଅର୍ଥାତ୍ ଈଶ୍ୱର ବା ଅଲ୍ଲାଙ୍କର ଆଦେଶ ଯେ ସେ ବିବାହ ପୂର୍ବରୁ ପ୍ରଣୟ କରି ପାରିବ ନାହିଁ । ସୁତରାଂ ଯେ ମୋ ସହିତ ପ୍ରଥମେ ବିବାହ କରିବ, ତାକୁ ମୁଁ ପ୍ରଣୟ ଦାନ କରିବ । ଏହା ତିବାର ସତ୍ୟ, ମାତ୍ର ସେଥିପାଇଁ ଉପଯୁକ୍ତ ବିଧି ବିଧାନ ହେବା ଆବଶ୍ୟକ । ତାହା ମୁସଲମାନ ରୀତିରେ ହେଉ ବା ହିନ୍ଦୁ ରୀତିରେ ହେଉ ।

ପ୍ରୋକ୍ତ ପ୍ରସ୍ତାବଟି ତାହାଙ୍କ କିଙ୍କାଣି ଉଭୟ ଦସ୍ୟୁଙ୍କ ମନକୁ ପାଇଗଲା । ସେଦିନ ରାତିରେ ଭଗବାନଙ୍କ ଆଶୀର୍ବାଦରୁ ହୃତସ୍ୱର୍ଗନୀ-ମାନେ ନିଷ୍କୃତି ଲାଭ କରି ସେମାନଙ୍କର ଶୟନ କକ୍ଷରେ କରୁଣା-ମୟୀଙ୍କର ଅପାର କରୁଣା ପାଇଁ ଧନ୍ୟବାଦ ଦେବାକୁ ଲାଗିଲେ । ଦସ୍ୟୁମାନେ କ୍ଳାନ୍ତ ଓ ଅବଶନ୍ନ ହୋଇ ସ୍ୱ ସ୍ୱ କକ୍ଷରେ ଗାଢ଼ ନିଦ୍ରାରେ ଅଭିଭୂତ ହେଲେ ।

ପରଦିନ ଠାରୁ ମନସୁର ଓ ମକବୁଲ୍ ବିବାହ ଆୟୋଜନରେ ହେଲେ ବ୍ୟାପୃତ । ଯେ ଯେତେ ଶୀଘ୍ର ବିବାହର ବିଧି ବିଧାନ ପ୍ରସ୍ତୁତ କରି ରଖିବ, ସେ ନିଶ୍ଚୟ ହେବ ପ୍ରେମଲତାଙ୍କର ପ୍ରଣୟୀ । ଏହି ଆଶାରେ ଉଭୟେ ବ୍ୟଗ୍ର ହୋଇ ପଡ଼ିଛନ୍ତି । ତ ଦିନ ମଧ୍ୟରେ ଘୋଡ଼ା ଦୁଇଟି ଆସି ହତା ଭିତରେ ବନ୍ଧା । ସ୍ୱୋଷନୀ ପାଇଁ ଅଲୁଅ, ବାଣ ଓ ବାଜାର ବଜାର ଖୋଲିଲା ସେହି ନୁରମହଲରେ । କେତେ ସଙ୍ଗସାଥୀ, ପନ୍ଥୀ ଅଭ୍ୟାଗତ ନୁରମହଲକୁ ଆମନ୍ତ୍ରିତ ହେଲେ । କେଉଁଥିଭ ବୁଲିଲା । ବଡ଼ କୌତୂହଳର ବିଷୟ ଯେ, ବର କନ୍ୟାଙ୍କୁ ଆଶୀର୍ବାଦ ଦେବାକୁ ଭଗ୍ନୀ ଦମନ୍ତି ମଧ୍ୟ ଆମନ୍ତ୍ରିତମାନଙ୍କ ମଧ୍ୟରେ ଆସନ ଲାଭ କରିଥିଲେ । ଜଣେ ମୌଲବୀ ସମସ୍ତ କାର୍ଯ୍ୟ ନିର୍ବାହ କରିବାରେ ଥିଲେ ନିଯୁକ୍ତ ।

ବିବାହ ସନ୍ଧ୍ୟା ହେଲା ଉପସ୍ଥିତ । ବାଜା ବଜନ୍ତ୍ରୀ ଆଗରେ ଚାଲିଥାନ୍ତି । ଆଲୋକ ଓ ଆତସ ବାଜିରେ ସ୍ଥଳପଥ ଓ ବ୍ୟୋମପଥ ହେଲା ଉଦ୍ଭାସିତ । ସୁସଜ୍ଜିତ ତୁରଙ୍ଗ ଆରୋହଣ କରି କନ୍ୟା ଦ୍ୱୟ ଏକସଙ୍ଗେ ଚାଲୁଥାନ୍ତି । ବରଭୂଷଣରେ ଭୂଷିତ ହୋଇ ମନସୁର ଓ ମକବୁଲ ମୌଲବୀଙ୍କ ମୁଖ ନିଃସୃତ ପୂତ ଉକ୍ତି ପୁନରୁକ୍ତି କରି କରି ତାଙ୍କର ପଦାଙ୍କ ଅନୁସରଣ କରୁଥାନ୍ତି । ଶୋଭାଯାତ୍ରା ବସନ୍ତସ୍ୱରେ ପହଞ୍ଚି ମସଜିଦ ଠାରେ ଅଟକିବ । ସେଠାରେ ପ୍ରାର୍ଥନା ସାଙ୍ଗହେଲେ, ବିବାହ ପ୍ରାର୍ଥୀ ବର ଦୁହେଁ ଗୋଟିଏ ଗୋଟିଏ ଅଶ୍ୱ ଆରୋହଣ କରି ମୌଲବୀଙ୍କର ଇଙ୍ଗିତ ପାଇବା ମାତ୍ରେ ନୁରମହଲରେ ଅବସ୍ଥିତ ଦୁଇଜଣ ମଧ୍ୟସ୍ଥଙ୍କ ଠାରୁ ଦୁଇଟି ଅଙ୍ଗୁରୀୟ ଗ୍ରହଣ କରି ମସଜିଦ ଅଭିମୁଖରେ ଅଶ୍ୱ ଚାଳନା କରିବେ । ଯେ ସର୍ବାଗ୍ରେ ପ୍ରେମଲତାଙ୍କ ସହ ଅଙ୍ଗୁରୀୟ ଓ ପୁଷ୍ପହାର ଆଦାନ ପ୍ରଦାନ କରିବ, ସେ ତାଙ୍କର ପାଣି ଗ୍ରହଣ କରିବ । ପରାଜିତ ପ୍ରତିଦ୍ୱନ୍ଦୀ ବାସନ୍ତୀ ଦେବୀଙ୍କ ସହ ବିବାହ କରିବାକୁ ବାଧ୍ୟ ହେବ । ଏହିପରି ଅଦ୍ଭୁତ ପ୍ରତିଯୋଗିତାରେ ମନସୁର ଓ ମକବୁଲ୍ ସ୍ୱୀକୃତ ହୋଇ-ଥିଲେ । କାରଣ ଆମନ୍ତ୍ରିତ ଭଦ୍ରବ୍ୟକ୍ତିଙ୍କର ଏହାଥିଲା ଚୂଡ଼ାନ୍ତ ନିଷ୍ପତ୍ତି ।

କିନ୍ତୁ ନିସ୍ତବ୍ଧ ଅଟ୍ଟହାସ ଓ ଉଗ୍ରନୀ ଯୁବକର ଭ୍ରୂକୁଞ୍ଚନ ସୂଚକ ଧର୍ମ ତତ୍ପରତା କମେଷଙ୍କ ମାନ୍ଦେ ବାର୍ଯ୍ୟ ନିର୍ବାହକା ସମିତିର ସମସ୍ତ ପ୍ରସ୍ତାବ ଓଲଟ ପାଲଟ କରିଦେଲା । ମନସୁର୍ ଓ ମଜବୁଲ୍ଙ୍କ ପରିବର୍ତ୍ତେ ଉଗ୍ରନୀ ସ୍ତ୍ରୀ ଓ ପୁରୁଷ ଯଥାକ୍ରମ ପ୍ରେମଲତା ଓ ବାସନ୍ତୀଙ୍କ ଦେହ ବଗ ଅଶ୍ୱ ପୃଷ୍ଠକୁ ଲମ୍ଫ ଦେଇ ବିଦ୍ୟୁତ୍ ବେଗରେ ଅଶ୍ୱମାନଙ୍କୁ ଧାବମାନ କରାଇ ସ୍ଥଳରେ ନୋଆଖାଲି । ରମଣୀ ଦ୍ୱୟ ଅଶ୍ୱ-ମାନଙ୍କର ଗ୍ରୀବା ଦେଶ ଧାରଣ କରି ଆସନ ଦୃଢ଼ କଲେ । ଦେଖଣାହାରୀ କେବଳ ପିସ୍ତଲର ଶବ୍ଦ ଓ ପ୍ରତିଶବ୍ଦ ଶୁଣିବାକୁ ପାଇଲେ । କିନ୍ତୁ ସମସ୍ତ ବ୍ୟର୍ଥ ।

ତତ୍ପର ଦିନ ପ୍ରଭାତରେ ଅଶ୍ୱାରୋହୀମାନଙ୍କର ଉପସ୍ଥିତି ନୋଆଖାଲି ସେବା ଶିବିରରେ ବଡ଼ ଚାଞ୍ଚଲ୍ୟ ସୃଷ୍ଟି କଲା । କାଶ୍ମୀର ପତାକା ତଳେ ସହସ୍ର ସହସ୍ର ନର ନାରୀ ଗାନ୍ଧିଜୀଙ୍କ ପ୍ରାର୍ଥନା ସଭାରେ ଯୋଗଦାନ ପୂର୍ବକ ଅପେକ୍ଷା କରିବାରେ ଲାଗିଲେ । ଗାନ୍ଧିଜୀ ଗୋଟିଏ ଟେବଲ ଉପରେ ହାତ ଯୋଡ଼ ଠିଆ ହୋଇ ଥାନ୍ତି । ଟେବଲ ପାଖରେ ସମ୍ପାଦକ ଚମନ୍ ଲାଲ୍, ଆଡ଼ଭୋକେଟ ମୋହିନୀ ମୋହନ, କ୍ୟାପଟେନ କପିଳ ବିହାରୀ, ଲେଡି ସର୍ଜନ ପ୍ରେମଲତା ଓ କୁମାରୀ ବାସନ୍ତୀ ସମସ୍ୱରରେ ଗାଇବାକୁ ଲାଗିଲେ: —

"ରଘୁପତି ରାଘବ ରାଜା ରାମ,
ପତିତ ପାବନ ସୀତା ରାମ;
ଈଶ୍ୱର ଆଲ୍ଲା ତେରେ ନାମ,
ସବକୋ ସନ୍ମତି ଦେ ଭଗବାନ ।"

ସମବେତ ଜନତା ମଧ୍ୟ ଏହି ସର୍ବାଦୃତ ପ୍ରାର୍ଥନାଟିକୁ ଏକ ସ୍ୱରରେ ଅନୁ-କରଣ କରି ଗାଉଥାନ୍ତି । ପନ୍ଦର ମିନିଟ ପର୍ଯ୍ୟନ୍ତ ପ୍ରାର୍ଥନା କରାଗଲା । ଗାନ୍ଧିଜୀ ଉପସ୍ଥିତ ଶ୍ରୋତୃବର୍ଗଙ୍କୁ ସୃଷ୍ଟି କର୍ତ୍ତାଙ୍କର ସନ୍ତାନ ବୋଲି ସମ୍ବୋଧନ କରି, ନିଜ ନିଜ ମଧ୍ୟରେ ଯେମାନେ ଶାନ୍ତି, ସ୍ନେହ ଓ

ସୌହାର୍ଦ୍ଦ୍ୟ ରକ୍ଷା କରି ଚାଲିବା ନିର୍ବାହ କରନ୍ତୁ ବୋଲି ଉପଦେଶ ଦେଇଥିଲେ । ସମସ୍ତେ ସମାନ ଓ ଏକ ବୋଲି ଜ୍ଞାନ କଲେ, ଏକତାର ପ୍ରତୀକ ପରମ ପିତାଙ୍କୁ କାହିଁ ଲାଭ କରି ହେବ, ଉନ୍ନତି ପଥରେ ଅଗ୍ରସର ହେବା ପାଇଁ ଅହିଂସାହିଁ କେବଳ ଉତ୍କୃଷ୍ଟମାର୍ଗ, ଏକତା ପ୍ରତିଷ୍ଠା ନିଜ ନିଜ ଗୃହରୁ ଆରମ୍ଭ କରି ଗ୍ରାମ, ଥାନା, ଜିଲ୍ଲା, ପ୍ରଦେଶ, ଦେଶ, ମହାଦେଶ ଓ ଶେଷରେ ବିଶ୍ୱର ଏକତା ଗଠନରେ ହିଁ କେବଳ ମାନବର ପ୍ରଗତି ସମ୍ଭବ, ଏହି ନିଗୂଢ଼ ସତ୍ୟ ନାନା ଉଦାହରଣ ଦ୍ୱାରା ବୁଝାଇ ମହାତ୍ମାଜୀ ଏକ ହୃଦୟସ୍ପର୍ଶୀ ଭାଷଣରେ ସମସ୍ତଙ୍କୁ ଏପରି ମୁଗ୍ଧ କରି ଦେଇଥିଲେ ଯେ, ବୋଧ ହେଉଥାଏ ସମଗ୍ର ଜନତା ଏକ ନିର୍ବେଦ, ନିସ୍ପନ୍ଦ ଅଚମାନ । ତାଙ୍କର ବକ୍ତୃତା ଶେଷ କରି ବସିବା ପୂର୍ବରୁ ସେ ଅନ୍ତର ମଧ୍ୟ ଜନତାଙ୍କୁ ପ୍ରାର୍ଥନା କରି କହିଲେ, ଦୁଷ୍ଟ ଭ୍ରଷ୍ଟ ଲୋକମାନଙ୍କୁ ସ୍ନେହ ସହାନୁଭୂତି ଦେଖାଇ ଓ ସଦ୍‌ବୁଦ୍ଧି ଦେଇ କେବଳ ଆପଣାର କରିହେବ ! ଦୁଇଜଣ ବିଶିଷ୍ଟ ଦେଶସେବୀ ଭଉଣୀଙ୍କୁ ଦୁଇଜଣ ଦେଶପ୍ରେମୀ ଓ କର୍ମୀ କେବଳ ବିପଥଗାମୀ ଲୋକମାନଙ୍କଠାରୁ ରକ୍ଷା କରି ପାରିଛନ୍ତି, ତାର ସବିଶେଷ ବୃତ୍ତାନ୍ତ ବର୍ଣ୍ଣନା କରିବା ପାଇଁ ସେ ନାରୀ କର୍ମୀ ପ୍ରେମଲତାଙ୍କୁ ଆହ୍ୱାନ କଲେ । ପ୍ରେମଲତା ନୂର-ମହଲର ସେହି ଲୋମହର୍ଷଣକାରୀ ବୀଭତ୍ସ କାଣ୍ଡ ଜନତା ଆଗରେ ବର୍ଣ୍ଣନା କଲେ, ତାହା ଏକ ଧ୍ୟାନରେ ଶୁଣୁଥିବା ପ୍ରତ୍ୟେକ ଲୋକଙ୍କ ମୁଖର ଚେହେରା କହି ଦେଉଥିଲା ସେ କେତେଦୂର ଏଥିପାଇଁ ବ୍ୟଥିତ । ପ୍ରାର୍ଥନା ସଭା ଶେଷକରି ମହାତ୍ମାଜୀ ଓ ସେବା ଶିବିରର କର୍ମୀଗଣ ସଭାସ୍ଥଳ ତ୍ୟାଗ କରନ୍ତେ ଶ୍ରୋତୃମଣ୍ଡଳୀ ନଦୀ ସ୍ରୋତ ପରି ଚାଲିଲେ ସ୍ୱ ସ୍ୱ ଗୃହାଭିମୁଖେ ।

ଗାନ୍ଧିଜୀ ସେବା ଶିବିର ମଧ୍ୟରେ କର୍ମୀମାନଙ୍କୁ ସେମାନଙ୍କର ସମ୍ମୁଖରେ ରହିଥିବା ଦୀର୍ଘ କର୍ତ୍ତବ୍ୟ ପଥରେ କିପରି ଅଗ୍ରସର ହେବାକୁ ହେବ, ତାହାର ଦୃଷ୍ଟାନ୍ତମାନ ଆମର ପ୍ରିୟ ଯୌବନର ଯାତ୍ରୀ ଶଶିଭୂଷଣ, ମୋହିନୀ, ପ୍ରେମଲତା ଓ ବାସନ୍ତୀଙ୍କର ଅତୀତ କାର୍ଯ୍ୟରୁ ନଜିର ଦେଇ

ଅନ୍ୟାନ୍ୟ କର୍ମୀମାନଙ୍କ ମନରେ ଆଣିଥିଲେ ନବ ପ୍ରେରଣା ଓ ଉନ୍ମାଦନା । ସେ ଆହୁରି ମଧ୍ୟ କହୁଥିଲେ, "ସଂସାର କର୍ମକ୍ଷେତ୍ର । ପୁରୁଷ କର୍ମଶକ୍ତି ଓ ପ୍ରକୃତି ଶ୍ରଦ୍ଧା ବା ପ୍ରୀତି । ସେମାନଙ୍କର [illegible] ଅବସ୍ଥାରେ ଯେଉଁ ପରସ୍ପରର ପରିପୂରକ ପ୍ରକୃତିଗତ ମିଳନ ସମ୍ଭବ ହୁଏ, ତେବେ ଜୀବନ-ସିଦ୍ଧି ସୁନିଶ୍ଚିତ ।" ସେବା ଶିବିରରେ କଚ୍ଛଦନ ରହି ମହାତ୍ମାଜୀଙ୍କ ସଂସ୍ପର୍ଶରେ ଆସିବା ଦ୍ୱାରା ସେବା ଜୀବନର ଅନୁଭୂତି ରୂପେ ତାଙ୍କର ଅମୃତ ଉପଦେଶ ଲାଭ କରିବା ଆଶାରେ ଆମର ଆଦର୍ଶ ଏହି ଯୁବଗଣ ଯୌବନର ସାଥୀ ମହାତ୍ମାଙ୍କ ନିକଟରେ ପ୍ରାର୍ଥୀ ହେଲେ । ଗାନ୍ଧୀଜୀ ସେମାନଙ୍କର ଶ୍ରଦ୍ଧା ରକ୍ଷା କରି ଏହି ଉପଦେଶ ଦେଉଥିଲେ—ତୁମ୍ଭମାନଙ୍କ ଗୁଣ ଓ ଅତୀତ କାର୍ଯ୍ୟରେ ମୁଁ ବାସ୍ତବିକ ମୁଗ୍ଧ । ତୁମ୍ଭମାନଙ୍କ ପରି ଏକଶତ ସେବା ଦମ୍ପତି ଯଦି ମୋର ସହକର୍ମୀ ରୂପେ ପାଇଥାନ୍ତି, ତେବେ ଭାରତର ସ୍ୱାଧୀନତା ହାସଲ କରିବାକୁ ଏତେ ଦୀର୍ଘକାଳ ମୋତେ ଅପେକ୍ଷା କରିବାକୁ ହୋଇ ନ ଥାନ୍ତା । ଭାବିଥିଲି ଏହି ତୀର୍ଥ ସ୍ଥାନରେ ତୁମ୍ଭମାନଙ୍କର ଶୁଭ ପରିଣୟରେ ମୁଁ ପୁରୋଧା ହେବାକୁ, ମାତ୍ର ତୁମ୍ଭମାନଙ୍କର ଜନ୍ମଦାତା ସେହି ପୁଣ୍ୟ ମୂହୂର୍ତ୍ତରେ ଆଶୀର୍ବାଦ ଦେବା ଓ ସେହି ସୁଖରେ ଭାଗୀ ହେବା ଉଚିତ । ଏହି ଶୁଭକାର୍ଯ୍ୟ ତୁମ୍ଭମାନଙ୍କର ଜନ୍ମଭୂମିରେ ହେଉ ଏବଂ ଜ୍ଞାତି କୁଟୁମ୍ବଙ୍କ ସହିତ ଆନନ୍ଦ ଓ ଆଡ଼ମ୍ବର ସହକାରେ ସେହି କାର୍ଯ୍ୟ ତୁମ୍ଭେମାନେ ସମ୍ପାଦନ କରିବା ଉଚିତ । ମୋର ଆଶୀର୍ବାଦ ମୁଁ ଯଥା ସମୟରେ ସନ୍ଦେଶ ଦ୍ୱାରା ଜଣାଇ ଦେବି । ଜୀବନରେ ତୁମ୍ଭେମାନେ କୃତକାର୍ଯ୍ୟ ହୁଅ ।

—o—

# ଦ୍ୱାଦଶ ପରିଚ୍ଛେଦ

ମଧୁରେଣ ସମାପୟେତ, ଏହା କେବଳ ଆର୍ଷ ବାକ୍ୟ ନୁହେଁ, ପ୍ରକୃତି-ସିଦ୍ଧ ମଧ୍ୟ । ପ୍ରକୃତିର ଯାବତୀୟ ସମାପିକାହିଁ ମଧୁର । ଦିନର ଶେଷ ସନ୍ଧ୍ୟା ବା ଅସ୍ତମିତ ରବି ଏବଂ ସର୍ବରିର ଶେଷ ଉଷା ବା ବାଳ ରବି ଦିଗ୍‌ବଳୟରେ ଯେଉଁ ମନୋହର ଦୃଶ୍ୟ ରଚନା କରନ୍ତି, ତାହା କାହାର ଚିତ୍ତ ବିନୋଦକ ନୁହେଁ ! ଚନ୍ଦ୍ରର ପରିଣତି ପୂର୍ଣ୍ଣିମାଚନ୍ଦ୍ର, ପୁଷ୍ପର ପୂର୍ଣ୍ଣ ବିକାଶ ସୌରଭ, ଫଳର ସମାପ୍ତି ପକ୍ୱରସ, ବର୍ଷର ଶେଷ ଚୈତ୍ର ଓ ଋତୁର ଶେଷ ବସନ୍ତ ଯେପରି ମଧୁର; ସେହିପରି ପ୍ରେମର ପରିଣତି ପରିଣୟ ଏବଂ ତତ୍ ସମ୍ଭୂତ ପ୍ରଣୟ ମଧୁର ହୋଇଥାଏ

ରାମରାମ ମିଶ୍ର ଦୀର୍ଘ ଛଅମାସ ଜେଲ ରୂପକ ଶିକ୍ଷାଳୟରେ ଚରିତ୍ର ଶୋଧନ କରିବାରେ ନାନା କ୍ଳେଶ ତାପ ସହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନିର୍ମଳ, ଚରିତ୍ରବାନ, ଓ ବିଶୁଦ୍ଧ ବାସ୍ତବବାଦୀ ରୂପେ ବାହାରି ଆସିଥିଲେ ସ୍ୱ ଗ୍ରାମ ରାମଚନ୍ଦ୍ରପୁରକୁ । ପରିଣତ ବୟସରେ କିପରି ସାଙ୍ଗ ସାଥୀ ଆବଶ୍ୟକ, ତାହା ବାଛି ନେବାକୁ ସେ ଜେଲ ଗୃହର କଠୋର କଷାଘାତରେ ଶିକ୍ଷା କରିଛନ୍ତି । ମଧୁ ମହାପାତ୍ରଙ୍କର ସ୍ୱାର୍ଥପରତା, ବିଶ୍ୱାସ ଘାତକତା, ସରଳ ଚନ୍ଦ୍ର ବେହେରାର ଅପାତ ମଧୁର ଓ ସୁଖସେବ୍ୟ ଅସତ୍ ମାର୍ଗର ଭୋଗ ବିଳାସ ଏବଂ ତୋଷାମୋଦ-କାରୀଙ୍କ ବିଷକୁମ୍ଭ ପୟୋମୁଖ ବୃନ୍ଦ କଥା ତାଙ୍କୁ ଉଚିତ ଶିକ୍ଷା ଦେଇ ସାରିଛି । ଧନହିଁ ଗର୍ବ ଅହମିକାର କାରଣ ଥିଲା । କିନ୍ତୁ ସେ ଅତି ଦରିଦ୍ର ହୋଇ ଯାଇ ନ ଥିଲେ ମଧ୍ୟ ସାଧାରଣ ମଧ୍ୟବିତ୍ତ ଲୋକର ସ୍ତରକୁ ଆସି ଯାଇଛନ୍ତି । ସାଇ ପଡ଼ିଶା ଓ ସମାଜର ଲୋକେ ଖୋଜିଲେ ଖୋଜିଥାନ୍ତି ଜାତି ଅଭିମାନ ଓ ଟେକ । ତାଙ୍କଠୁଁ ଜାତିଟି ଧରି ଆଜି ସେ ସର୍ବସ୍ୱାନ୍ତ, ପୁଣି କଣ ସେ ସେହି ଭ୍ରମ ପ୍ରମାଦରେ ପଡ଼ିବେ ? ନା, ନା; ଏପଟ ସ୍ୱର୍ଗ ସେପଟ ହେଲେ ମଧ୍ୟ ଆଉ ନୁହେଁ ।

ମୋହିନୀ ମୋହନ ବାବୁ ଜୋହ୍ରାଖାଲରୁ ସିଧା ସିଧା ଗ୍ରାମକୁ ଫେରି ଆସିଲେ । ସେନେ ପିତାମାତାଙ୍କୁ ଘର ଭିତରେ ପାଖରେ ବସାଇ ସେ ଗାଇଗଲେ ତାଙ୍କ ଅତୀତ ଜୀବନର ଇତିହାସ, ପୃଷ୍ଠା ପୃଷ୍ଠା କରି, ପଂକ୍ତି ପଂକ୍ତି କରି—ଯାହା ପିତାଙ୍କର ମନରେ ଛନେ ଛନେ ଛପିଦେଲା ଗଙ୍ଗାର ଖେଳ ଓ ସ୍ୱାମୀ ବିବେକାନନ୍ଦଙ୍କ ବକ୍ତୃତାର ଦୃଶ୍ୟ, ତାଙ୍କର ଶିରା ପ୍ରଶିରାରେ ପ୍ରବାହିତ କଲା ଉଷ୍ଣରକ୍ତ । ତେଣୁ ସେ ଜର୍ମି ଉଠି କହିଲେ "ଜାତି ! ସମାଜ ! ଥାଉ, ଥାଉ ପଛେ ତାର ଦମ୍ଭ, ଅଭିମାନ । ମୁଁ ମୋର ପ୍ରାଣାଧିକ ପୁତ୍ର ପ୍ରତି ଆଉ ଅନ୍ୟାୟ ଆଚରଣ କରି ପାରିବି ନାହିଁ । ଲୋକାଚାରର ଯଦି ସ୍ୱାର୍ଥ ଜଡ଼ିତ ହୁଏ, ସମାଜର ରନ୍ଧ୍ରେ ରନ୍ଧ୍ରେ ହିଂସା ଅବିଶ୍ୱାସ ଏବଂ ଧର୍ମ ନାମରେ ପ୍ରତାରଣା ପୂରି ରହିଥାଏ; ଯଦି ସ୍ୱାର୍ଥ ସିଦ୍ଧି ପାଇଁ ଅନ୍ୟକୁ ନିଃସ୍ୱତ୍ତ୍ୱବାନ କରାଯାଏ, ତେବେ ସେ ସମାଜ ସନାତନୀ, ସଦ୍‌ଧର୍ମୀ, ସତ୍ୟାର୍ଥୀ, ସତ୍‌କାମୀ ଓ ମୁମୁକ୍ଷୁ ବୋଲାଇବାକୁ ସାହାସ କରେ କିପରି ? କାହିଁକି ବା ଜନ୍ମିଲେ ବୁଦ୍ଧ, ଚୈତନ୍ୟ ଓ ନାନକ ଏହି ଭାରତ ଭୂମିରେ ପ୍ରଚାରିବାକୁ ସତ୍ୟ, ଅହିଂସା, ନ୍ୟାୟ, ଆଉ ସାମ୍ୟ ଦୀକ୍ଷା ?"

ବାପ, ମା, ପୁଅ ତିନିହେଁ ଗୋଟିଏ ନିଷ୍ପତ୍ତିରେ ପହଞ୍ଚିଗଲେ । ନିଜେ ମିଶ୍ରେ ହାତରେ ଚିଠି ଲେଖିଲେ ବିବେକାନନ୍ଦ ବାବୁଙ୍କ ପାଖକୁ । ବିଭାଘର ସେହି ଶ୍ରୀକ୍ଷେତ୍ରରେ ହେବ । ସେମାନେ ମଧ୍ୟ ପୁରୀରେ ଗୋଟିଏ ବଡ଼ାଘର ନେଇ ବରପକ୍ଷର ସମସ୍ତ ବିଧି ବିଧାନ, ଯୌତୁକ, ଭୋଜି ଓ ବାଣ ଆଦିର ଖର୍ଚ୍ଚ ନିଜେ ତୁଲାଇବେ । କିନ୍ତୁ ଯୌତୁକରେ ଏତେ ବୃଥା ପଇସା ଖର୍ଚ୍ଚ କରିବାକୁ ମୋହିନୀ ବାବୁ ଆଦୌ ରାଜି ହେଲେ ନାହିଁ । ତାଙ୍କର ମତ ସେହି ପଇସାରେ ଗରିବ ଦୁଃଖୀ ଲୋକଙ୍କୁ ଭରି ଭୋଜନ ଦେଲେ ବରଂ ସେମାନଙ୍କର ତାତିଲା ପେଟ ଥଣ୍ଡା ହେବ । ସେମାନେ ସନ୍ତୁଷ୍ଟ ହେଲେ, ବୃତ୍ତିରୁ ଯାହା ବାହାରିବ ସେଇଆ ତାଙ୍କର ଧାର୍ଯ୍ୟ ହେବ । ତେଣୁ ଏହି ଯୁକ୍ତି ବଳରେ ଯୌତୁକ, ଭୋଜି ଓ ବାଣ କଥା ଚିଠିରେ ଲେଖାଗଲା । ଦିନ ମଧ୍ୟ ସ୍ଥିର କରି ଦିଆଗଲା ।

ବୁଢ଼ା ମକର ବାବୁଙ୍କ ଦୋକାନକୁ ଯାଇଥିଲା ସଉଦା କରିବାକୁ, ଏଣିକିବେଳେ ଆସି ପହଞ୍ଚିଗଲା । ତା କାନରେ ମଧ୍ୟ ବନ୍ଧୁଘର କଥା କେମିତି ପଡ଼ି ବାଜି ଯାଇଛି । କାନ୍ଧ ଉପରୁ ବୁଜୁଲିଟା କାଢ଼ି ତଳେ ଥୋଇଦେଲା । କହିଲା, "ଏଁ, ଡେଇଁ ବାବୁ, ସାଆନ୍ତେ, ମୋ ଓକିଲ ବାବୁ କି ତମକୁ କ ହାତେ ହେବେ ? ହଉ, ହଉ, ମୁଁ ଭଗବାନ ଆଶିଷ ଦେଉନ୍ତୁ, ଡେଇଁ ବାବୁ । ମୋ ପାଗଲା ବାଳ ସେ ନଅନ୍ତୁ । ଏଁ ଡେଇଁ ବାବୁ ଆଜ ଗୋଟେ ଦାଣ୍ଡରୁ କାହିଁକି ବାହାର ଆସିବ ? ଡେଇଁ ବାବୁ, ମୋ ବାବୁକୁ ମୁଁ କାବୁ କରି ନେବ ।"

ମୋହିନୀ ବାବୁ ନମକହଲା ବାରିକର କଥା ଶୁଣି ଟିକିଏ ହସି ପକେଇଲେ । ମକର ଦେଖି କରି କହି ପକାଇଲା, "ଏ ହସୁଛ କଣମ ବାବୁ, ଡେଇଁ ବାବୁ, ମୁଁ କେତେ କାନ୍ଦେଇଛି, କାଖ କରିଛି, ଚୁମ୍ବେଇଛି । ଡେଇଁ ବାବୁ, ଏଇ ହାତରେ ଖୁଆଇଛି, ପିଆଇଛି । ଏଁ, ଡେଇଁ ବାବୁ ମୋର ଅଧିକାର ନାହିଁ ? ଆଜ ଗୋଟାଏ ବାହାର ହେବ !" ମୋହିନୀ ବାବୁ ତାର ପିଠ ଆଉଁସି ଦେଇ କହିଲେ, "ନା ନା ମୁଁ କଣ ତୋତେ କେବେ ଭୁଲି ଯାଇଛି କି ? ତୁ ପରା ମୋର ପାଳକ ବାପା ।"

× × × ×

ରେଲ ଷ୍ଟେସନ ପାଖ ବଡ଼ରାସ୍ତା ଉପରେ ବି. ଏନ୍. ଆର ହୋଟେଲ ସାମନାରେ 'ଜୟ ହିନ୍ଦ ଭବନ'ଟି ଠିଆ ହୋଇଛି । ଘରର ସାମନାରେ ଗୋଟିଏ ଛାମୁଣ୍ଡିଆ ତିଆରି ହୋଇଛି । ଛାମୁଣ୍ଡିଆର ଦ୍ୱାରପଟ ଅମ୍ବ, ଦେବଦାରୁ ପତ୍ରରେ ମାଳମାନ ଝୁଲୁଛି । ଲାଲ ନେଳି କାଗଜର ଝିଞ୍ଜିର ଧନୁ ଆକାରରେ ଝୁଲି ଛାମୁଣ୍ଡିଆର ବାହାରୁ ଖାଲି ଇନ୍ଦ୍ରଧନୁ ମାଳକୁ ମାଳ ଛଇ ହୋଇଗଲା ପରି ଦିଶୁଛି । ବଜୁଳି-ବତୀ କେତେ ରଙ୍ଗର ଛାମୁଣ୍ଡିଆ ତଳେ ତାରା ଫୁଟିଲା ପରି ଦେଖା ଦେଲେଣି ! "ମୋହିନୀ ବାବୁଙ୍କ ବସାଘରେ କଣ ଶଙ୍ଖ ବାଜିଲାଣି !

ଘଣ୍ଟା ଘଣ୍ଟା ମଞ୍ଚର ଠିଆ ହୋଇଛ କାହିଁକି ? କି ରେ ହରିଆ !"—ଏହା କହି ଖିଲିପାନ ବଟା ଠୋଙ୍ଗାଟାର ଅଧେ ହସ ଓଠରେ ଲଗିଛି, ଅଧେ ପେଟରୁ ବାହାରୁ ବାହାରୁ ଗାଲ୍ ଦୁଇଟାଯାକ ବେଙ୍ଗପରି ଫୁଲାଇ ଦେଇ ସାରିଲଣି । ହରିଆ ଦୋକାନରେ ଗରମ ସୁ ଡଅର କରୁ କରୁ ଉତ୍ତର ଦେଲା, "ଆରେ ତା ମା ମରୁ ଏବେ କଥା ହୋଇ ଗଲଣି ତୁ କଣ କାନରେ ଠିପି ଦେଇଛୁ, ବାବୁପୋ ତୋ ଆଖିରେ ପରଳ ମାଡ଼ି ଗଲଣି, କିରେ ? ଆରେ କାଶି ତୀର୍ଥ, ମୋହିନୀ ବାବୁ ପରି ପ୍ରେମ-ଲତା ଡ଼ାକତରଣୀକୁ ବାହା ହେଉଛନ୍ତି । ଆଉ ଆମ କାପ୍ତାନ ବିପିନ ବାବୁ ସେଇ ଧୋବ ଫର ଫର ହସକୁସି ମ,ଡାକ୍ତର ଖାନା ସିଷ୍ଟରରେ, ବାସନ୍ତୀ ଦେଈକୁ ବାହା ହେଉଛନ୍ତି । ଦାମା, ବସ୍ ନା ଇ-ନାହେ ହେବେ କଣ ଦେଖିବୁ ।"

ଦାମ—ତେବେ ବାବୁପୋ, ଗୋଟେ ଜମାଣ ହେବ ପରି ?

ହରିଆ—ଆରେ ଜମାଣ ବୋଲି ଜମାଣ ! ଅଜିତ ମଙ୍ଗନ; ଯେତେ ବାବୁପୋ କଂଗ୍ରେସିଆ, ଗାନ୍ଧୀ ଟୋପିବାଲା, ବଡ଼ ବଡ଼ ନେତା ସବୁ, ଏଠାକୁ ଆସୁଛନ୍ତି ନିମନ୍ତ୍ରଣ ଖାଇ । କେବଳ ମହତାପ ଦିଲ୍ଲୀ ଯାଇଛନ୍ତି । ଆରେ ତାଙ୍କର କଣ ଅଭାବ ଅଛି ? ମାଲୁମ୍ ସେ, ଲାଖ ରୁପିଆ ଖରଚ ହୋ ଯାଏଗା ।

ଦାମା—ସାଙ୍ଗୀ, ସୁ କପେ ଗରମ ଗରମ କରି ଦେବୁ ନାହିଁ ? ନେ, ମହୁ ମହୁକା କପୁର ପକା ପାନ ଖିଲେ ନେ, ନେ ମ, ସାଙ୍ଗୀ । ଆଜି ମୋର ସୁଖ ବାର । ଏତେ ଏତେ ନେତା ସବୁ କଟକ, ବାଲେ-ଶ୍ୱର, ସାରା ଓଡ଼ିଶାରୁ ଆସିବେ, ଟଙ୍କା ଦଶଟା କଣ ମୋର ବର୍ଜି ହେବ ନାହିଁ ? ଲୋକତ ଅବଶ୍ୟ ଜମିବେ ଦେଖିବାକୁ ।

ହରିଆ—ସବେଶା, ହେଡ଼େ-ଏ ଅଣ୍ଡା କରୁଛି ! ଏଁ, ତୋର ଯଦି ଦଶ୍ ବିକୀହେବ, ମୋର ତ ତା' ଲେ ଶହେଣ୍ ବିକ୍ରୀ ହେବ ।

ଏଠିକି ସେ ବନ୍ଧୁମାନେ, ବାବୁ ଭୟା ନମ୍ରତା ଖାଇ ବାକୁ ଆସିବେ, ସେ ସବୁଜ ଘାସରେ ବସିବେ, ସଙ୍ଗୀତ ଶୁଣିବେ । ଆଉ ତାହାରେ ଯେ ଦେଖଣାହାରୀ ଦେଶୀ ପାଟକନ୍ୟାଏ ବସି କାଚ ପକାଇ ଦେଇ ଆସି ଥିବେ ତାହାରେ ଲଜ୍ଜିତ୍ ଫିକର୍‌ରୁ ଶୁଣି ବହିସିବେ । ସେ ଖାଇଲେ କଥାରେ ଟର୍‌ର୍ ହେବେ କିପରି ? ଆଜ ବନ୍ଧୁମାନେ ଖାଲି ଘୁଲି ପକେଇ ଆସିଥିବେ ଝଡ଼ୁସ୍‌ବାଲି ଘୁଡ଼ାକ । ତାଙ୍କ ଠି କଣ ଏତେ ବଳି ହେବ । ହୁଁ ପର୍ବତ, ଅକ୍ଟୁବର୍ ଅଛି ।

ବାମା—ସଙ୍ଗୀ ତୁ ଏତେ କାଲିମ ହେଉଛୁ ? କିଏ ମାର ନେବ ? ମୋର କଣ ସ୍କୁଲ କଲେଜ ପିଲ ନାହାନ୍ତି ? ଖାଲି ସିଗା-ରେଟ୍ ସୋଡ଼ା ଦଣ୍ଡ୍ ବଳଦ । ଡ଼ାକ୍ତର ଖାନାରେ ବାସନ୍ତୀଦେବୀଙ୍କୁ କଏ ସିସ୍ଟର ବୋଲ୍ ଡାକେ ତ କିଏ ମିସ୍ ମଲ୍ଲିକ୍ ବୋଲି ଡାକେ । ଦାମ ଦାମ ସାର ଦେଇ ସେ ଆଜି ବସାକୁ ଫେରୁଛନ୍ତି ସଅଳ ସଅଳ । କାରଣ ତାଙ୍କ ବାପା ଗୋବର୍ଦ୍ଧନ ମଲ୍ଲିକ ଡାକିବାକୁ ପଠାଇଥିଲେ ମୋହନ ବାବୁ ପଠାଇଥିଲେ । ସେ ଆସିଲେ ମଧ୍ୟ ଭଦ୍ରଲୋକଙ୍କର ଚର୍ଚ୍ଚା କରିବେ । ବାସନ୍ତୀ ଦେବୀ ରାସ୍ତାରେ ଆସୁଛନ୍ତି; ଜଣେ ଗୋରା ଟମି ସୈନ୍ୟ ମଦ୍ୟ ଟିଏ ପକାଇ ସିଗାରେଟ୍ ଖାଇ ମନ ଖୁସିରେ ଶିଷି ମାରୁ ଥିଲା । ବାସନ୍ତୀ ଦେବୀଙ୍କ ଦେହରେ ସେ ଧକ୍କା ହୋଇ ଯାଇ ଯାଉଛି, ଇମିତ ସମୟରେ ବାସନ୍ତୀ ଦେବୀ ଗର୍ଜିଲେ କହିଲେ :—

"Trespassing womanhood you man hater? ଟମି ଫେର ଆସି ସେକ୍ ହାଣ୍ଡ କରି ଓ ଟିକିଏ ହସି ଦେଇ କହିଲା, "Excuse me Miss Mallick, you have no courtesy in speaking".

Basanti—Courtesy! Better you know than I? You think, kicking with foot, receiving with shake-hand and mocking with a smile?

Tommy—Sweet girl, it's not my fault, you see, Indian roads are rough to be trodden mildly.

Basanti—( with an angry look ) Still mocking, you brute and you are betraying your master's dignity ? This is not 1919 or 1942. This is 1947. Quit, quit.

Tommy—What to quit, my fair girl ? your person, or this place ?

Basanti—Quit this place and Quit India. Barbers, usurpers, and black-marketeers have no place in the Indian Republic under the control of the Congress Government.

ଡେରି ହେବାର ଦେଖି ମୋହନ ବାବୁ, ବାସନ୍ତୀ ଦେବୀ ଆସୁଛନ୍ତି ନାହିଁ, ଦେଖିବାକୁ ଗଲେ । ରାସ୍ତା ଉପରେ ଟମି ସୈନ୍ୟ ଓ ବାସନ୍ତୀ ଦେବୀଙ୍କର ବାକ୍‌ବିତଣ୍ଡା ଶୁଣି ପଛକୁ ଫେରିଗଲେ ନିଜେ ଅପମାନକୁ । ବୋଧହୁଏ ଇଚ୍ଛା—ବାସନ୍ତୀଙ୍କର ସାହସ ପରୀକ୍ଷା କରିବା । କିନ୍ତୁ ସେ ଟମି ଓ ବାସନ୍ତୀଙ୍କର ଉକ୍ତି ପ୍ରତ୍ୟୁକ୍ତିରୁ ଯାହା ବୁଝିଲେ, ସେଥିପାଇଁ ମନେ ମନେ ବାସନ୍ତୀଙ୍କୁ ପ୍ରଶଂସା କଲେ । ଦୌଡ଼ିଯାଇ ନବାବ ଭୁଟାଉ ଦେଖାକୁ ଠିଆହୋଇ ଗଲେ ଉଭୟଙ୍କ ମଧ୍ୟରେ । ଟମି ବକ୍ସ ଲଜ୍ଜିତ ହୋଇ ଠିଆ ହେଲା । ମୋହନ ବାବୁ ଟମିକୁ ହସି ହସି କହିଲେ—

"Thank you for being gallant. I would rather request you to smoothen the destructive irruptions of your English civility."

ଟମି ନକୁଳର ହୋଇ ଚାନମୁଣ୍ଡା ଅଁଇସି ଅଁଇସି ଚାଲିଗଲା । ମୋହନ ବାବୁ ଓ ବାସନ୍ତୀ ଦେବୀ ଘରକୁ ଫେରିଲେ ।

ସନ ୧୯୪୭ ଅଗଷ୍ଟ ୧୫ ତାରିଖ । ପୁରୀ ସହରର ପ୍ରତ୍ୟେକ ଦେଉଳ, ଦୋକାନ, ଦୋକାନ, କୋଠାବାଡ଼ି, ସ୍କୁଲ ଓ କୁଟୀରଘର, କୋର୍ଟ କଚେରୀ, ଥାନା ଡାକ୍ତରଖାନା, ଡାକଘର, ଡାକବଙ୍ଗଳା ଆଦି ପଞ୍ଚ

ସୁପ୍ତଫଳ, ହରରଙ୍ଗୀ କାଗଜର ଫୁଲ, ତୈଳବତ୍ତୀ,ମହମବତ୍ତୀ ଓ ବିଜୁଳି ବତୀ ଆଲୁଅରେ ସଜ୍ଜା ହୋଇଛି । ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ବାଦ୍ୟମାନ ମଧ୍ୟ ସ୍ଥଳରେ ଚକ୍ର-ଚିହ୍ନ ବିଶିଷ୍ଟ ଲୋହିତ-ଶ୍ୱେତ-ନୀଳ-ରଙ୍ଗର ତ୍ରିରଙ୍ଗ ପତାକାମାନ ସଗର୍ବେ ପତି ଗୃହର ଛାତ ଉପରେ ଉଡୁଛନ୍ତି । ସଦ୍ୱାର ଚଉ ଶୃଙ୍ଗାଟକ ମନୋହର ତୋରଣ ଦ୍ୱାରା ମଣ୍ଡିତ । ଅଦୂରରେ କୃତ୍ରିମ ଉଦ୍ୟାନ ବା ପାର୍କର ଶ୍ୟାମଳିମା ବିଦ୍ୟୁତ ଆଲୋକରେ ନୟନାଭିରାମ ଦୃଶ୍ୟରେ ପରିଣତ ହୋଇଛି । ଯୁବକ ଯୁବତୀ, ପ୍ରୌଢ଼ ପ୍ରୌଢ଼ା, ବୃଦ୍ଧ ବୃଦ୍ଧଣୀ,ବାଳବାଳିକା ସମସ୍ତେ ଆଜି ଏ ସ୍ୱାଧୀନତା-ଉତ୍ସବରେ ପ୍ରାଣ ସ୍ଫୂର୍ତ୍ତି ବିଧାନରେ ରତ । ମଣ୍ଡପମାନଙ୍କର ପଶ୍ଚାତ୍ ଭାଗରୁ ଡାକବାଜ ଯନ୍ତ୍ରଦ୍ୱାରା ଜାତୀୟ ସଙ୍ଗୀତର ମୂର୍ଚ୍ଛନା ଭାସି ଆସି ଶ୍ରୋତାର ମନ-ପ୍ରାଣକୁ ଉଚାଟନ କରେ । ଯହିଁ ଯାଅ ତହିଁ ଦେଖିବାକୁ ମିଳେ ଭାରତୀୟ ନରନାରୀ ଆବାଳବୃଦ୍ଧବନିତାଙ୍କର ମୁଖ ମଣ୍ଡଳରେ ଇନ୍ଦ୍ରଧନୁ ସମ ଜ୍ୟୋତି ଓ ଅପୂର୍ବ ପୁଲକ । ସ୍ୱାଧୀନତା-ବାତ୍ୟା-ହିନ୍ଦୋଳ ସଂସ୍ପର୍ଶରେ ତାଳେ ତାଳେ ନୃତ୍ୟ କରନ୍ତି ଦେଖାଇବାକୁ ବିଶ୍ୱ ଦରବାର ସମ୍ମୁଖରେ,ଏ ମହାଜାତିର ପ୍ରୋଦ୍ଦୀପିତ ଗୌରବର ଦୃପ୍ତମୂର୍ତ୍ତି

ବିବେକାନନ୍ଦ ବାବୁଙ୍କର ତ୍ରିତଳ ପ୍ରାସାଦ ଓ ପ୍ରାଙ୍ଗଣ ମଣ୍ଡପର ସାଜ-ସଜ୍ଜା ଦେଖିଲେ, ଜଣାଯାଏ ଭାରତର ସମସ୍ତ ପୁର ପଲ୍ଲୀରୁ ସ୍ୱାଧୀନ ଭାବରାଜି ଏଠାରେ ଆଜି ଏକାଠି ଠୁଳ । ପ୍ରାସାଦର ଚନ୍ଦ୍ରଶାଳାରୁ ସୁବୃହତ୍ ଜାତୀୟ ପତାକା, ତଥା ଡାକବାଜ ଯନ୍ତ୍ର, ଯଥାକ୍ରମେ ଶଣ-ଶବ୍ଦ ଗର୍ଜ୍ଜିତ ତ୍ରିରଙ୍ଗ ପତକା ମାଳା ଓ ସମ୍ବାଦବାର୍ତ୍ତା ବୈଦ୍ୟୁତିକ ତାର ଦ୍ୱାରା, ନିଶବ୍ଦ ଓ ସଶବ୍ଦ ଭାବରେ ଭାରତ ଜାତିର ମୁକ୍ତି ଘୋଷ ପ୍ରଚାର କରନ୍ତି । ସୁଗଠିତ ଅନ୍ତଃପ୍ରାଙ୍ଗଣ ଓ ପ୍ରାସାଦ ସମ୍ମୁଖୀନ ମଣ୍ଡପମାନଙ୍କରେ ସମବେତ ଶ୍ରୋତୃବର୍ଗଙ୍କୁ ବୁଝାଏ କୋଟି ନର ନାରୀଙ୍କର ଦମିତ ସ୍ୱାଧୀନତା ଭାବ, ଅଜେୟ ତେଜ ଶକ୍ତି-ସାହସରେ ବିଶ୍ୱବାସୀଙ୍କୁ ଜଣାଇ ଦେଇଛି ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ମୁକ୍ତି ସଂଗ୍ରାମର ପରିଣତି—ସେହି ଲୁପ୍ତ ସୌଭାଗ୍ୟ ରବି ଉଦୀୟମାନ ଆଜି ।

କିନ୍ତୁ ଏ ସ୍ୱାଧୀନତା ଯୁଗରେ ବଚନାନନ୍ଦ ବାବୁଙ୍କ ଜ୍ଞାତି-ଗୋଷ୍ଠୀ-ସ୍ୱଜନମାନଙ୍କର ଅନ୍ୟ ଏକ ବିଶେଷ ଯୁଗଳ, ମିଶ୍ରିତ ହୋଇ ସୃଷ୍ଟି କରିଛି ବିବାହ ଉତ୍ସବ,—କାହା ପାଇଁ ? ସେହିମାନଙ୍କ ପାଇଁ—ଯେଉଁମାନେ ଯୌବନର ସମସ୍ତ ତେଜ, ବୀର୍ଯ୍ୟ, ଧୀମତ୍ତା ଓ ତ୍ୟାଗ ଦାନ କରିଥିଲେ, ଭାରତର ମୁକ୍ତି ସଂଗ୍ରାମ ପ୍ରାଙ୍ଗଣରେ । ବ୍ୟାପରେନ୍ ବଦନ ବିହାରୀ ମହାନ୍ତି, ଏମ୍. ଏ ଓଡ଼ିଶାର ଦ୍ୱୀତୀୟ ସ୍ୱାସ୍ଥ୍ୟମନ୍ତ୍ରୀ ବିବାହ ସୂତ୍ରରେ ଗ୍ରଥିତ ହେଉଛନ୍ତି ଓଡ଼ିଶାର ଖ୍ୟାତନାମା ସମାଜ ସଂସ୍କାରିକା ଧର୍ମସ୍ୱା ଭାସନ୍ତୀ ଦେବୀଙ୍କ ସହ । ଯୁଗପତ୍ ଏହି ବିବାହ ଆନ୍ତରିକ ଭାବ ମିଳନ କରି ଦ୍ୱୀତୀୟ ଅଡ଼ଭୋକେଟ୍ ଶ୍ରୀ ମୋହିନୀ ମୋହନ ମିଶ୍ର, ଓଡ଼ିଶାର ଦ୍ୱୀତୀୟ ମୁଖ୍ୟ ମନ୍ତ୍ରୀ ଓ ଲୋକ ସଜ୍ଜନ କୁମାରୀ ପ୍ରେମଲତା ମହାନ୍ତିଙ୍କର ଶୁଭ ପରିଣୟ ସହ, ସାଧିକା କୁ ଉତ୍କଳ ମାତାର ଅପୂର୍ଣ୍ଣ କାମନା ।

ମୋହିନୀ ମୋହନ ବାବୁଙ୍କ ଗୃହର ବିବାହ ବେଦୀ ଉପରେ ଥିଆ ଅଛି ଶ୍ରୀଫଳ ଓ ପୂର୍ଣ୍ଣ କୁମ୍ଭ । ହୋମ ଅଗ୍ନି ଜଳୁଛି, ସନ୍ତୁ ମଣ୍ଡଣା ଉପରେ ବଦନ ବାବୁ ଓ ଭାସନ୍ତୀ ଦେବୀ ଦୋଳ ମୁକୁଟ ହୋଇ ବସିଛନ୍ତି । ବରପିତା ଓ କନ୍ୟାପିତା ପୁରୋହିତଙ୍କ ମୁହଁମନ୍ତ୍ର ସନ୍ଧ୍ୟା-ସ୍ୱଳିତ ସ୍ୱରରେ ବୋଲି ଦିବାରେ ବ୍ୟସ୍ତ । ବେଦୀ ଚାରିପଟେ ସତରଞ୍ଜି, ଗାଲିଚ ଓ ଦେରପାଲ ବିଛା ହୋଇଛି । କେହୁକେହୁ ଭାବ ପାରନ୍ତି, ଏସବୁ ବିଛା ହେବାର କାରଣ କଣ ? ଭଅତ କେଉଁଠି ଦେଖାଯାଏ ନାହିଁ । କିନ୍ତୁ ଆମର ସେମାନଙ୍କ ଏତିକ ଉତ୍ତର ଦେବାର ଅଛି । ଏବେ ଯେ ଦେଶର ବୁଦ୍ଧିଆଡ଼ୁ ନେତା, ଉପନେତା, ଅପନେତା, ଅଭିନେତା, ଭୂତନେତା, ଜମ୍ବୀନେତା, ବୋଉଝାଣ୍ଟିନେତା, ସଭକ ଓ କଳା-ଗୋଡାଇ ନେତା ଆମନ୍ତ୍ରିତ ହୋଇ ଆସିଛନ୍ତି, ସେମାନେ ବଂଶ ଦ ଗୋଟିଅ, ଦେଢ଼ ଗୋଟିଅ, ଏକ ଗୋଟିଅ ହୋଇ, ବୁକୁ ଠେଲିଇ, ପେଟ ଫୁଲାଇ, ପିଠିବଙ୍କାଇ, ଅଷ୍ଟାଭଙ୍ଗି, କେବଳଭଙ୍ଗି, ତ୍ରିଭଙ୍ଗ ଭଙ୍ଗି, ମୁହଁକୁ ମାଡ, ମୁହଁକୁ ମୋଡ, ହାତକୁ ଯୋଡ, ଦାନ୍ତ ନେଫାଡ, ଗୋଡ଼ କବୃଡ, ହାତ କବୃଡ, ମୁହଁକୁ ବୁହଁ, ହାତକୁ ବୁହଁ, କାନ୍ଧକୁ ବୁହଁ, ବାହୁକୁ ବୁହଁ; ସୁଖ ମନରେ, ଦୁଃଖ ମନରେ ଏକ ମନରେ, ନିଜ ମନରେ, ଅନ୍ୟ ମନରେ, ଭିନ୍ନ ମନରେ,—ଠିଆ ହୋଇ ରହିବେ, ତଳେ ବସିବେ, ବାହା ଶେଷକୁ ବୁହଁ ରହିଥିବେ, ତାଧରେ

ଯାଇ ବର କନ୍ୟାଙ୍କୁ ଆଶୀର୍ବାଦ କରେ !!! ନମସ୍କାରାନ୍ତ ମାନ ଷଦ଼ରେ ପଡ଼ିବ ସିନା !

ଆପଣମାନେ କେହି କେହି କହି ପାରନ୍ତି, ପାଞ୍ଚଶହର ପଚାଶ ବର୍ଷର କଥା । ଖାଲି ମିଛିମିଛି ବୁଢ଼ାଙ୍କ କଥା ଗାଇଲ । ଆଜ ମାଇପିମାନେ କଣ ନଈଁରେ ମୁଣ୍ଡଥିଲେ ? ଏତେ ବଡ଼ ଗୁରୁତର ଦୋଷ ଆମେ କଅଁ ମୁଣ୍ଡେଇବୁ ? ଆଜ ଆପଣମାନେ କାହିଁକି ତେଲ ଚଢାଇ ଆମକୁ ସବାକେଳେ ଚଅଁ ମାଡ଼ୁଥିବେ ?

ସାଇ ପଡ଼ିଶା, ଆଖ ପାଖରୁ ଡକରା ଅଡ଼କରା ଖେଦା ଖେଦା ମାଇପେ ପାଠ ପାଠଡଶିଆ ବା ଶାଢ଼ୀ, ମକୁଟା, କାଞ୍ଚଲି ଟିକ୍, ଓଢ଼ଣା ପକାଇ, କିଏ ମୁଣ୍ଡ ମୁକୁଳାଇ, କିଏ କୁଡ଼ା ପାଇ, ଚଉଁରାଭୁଞ୍ଜି, ପିଅଣିଆ, ଗୋଇଠାପାଠି ଖୋସି, ନଥ, ନାକଚଣା, ଦଣ୍ଡି, ମୟୂର ବସା ଗୁଣା, ଦୋଳ, ବଉଳ ଫାସିଆ, ମଲକଢ଼ୀ, ଗିଲମାଳ, ହରଡ଼ଫାଳମାଳ, ଷୋଡ଼ଷିଆ ମାଳ, କୁରୁଡାତକ ମାଳ, ଚାବୁଟି, ବାଜବନ୍ଧ, ଅନନ୍ତ, ବଠଫଳ, ପଇଞ୍ଚି, ଚୁଡ଼ି, ଅଣ୍ଟାସୂତା, ଚନ୍ଦ୍ରହାର, ମଲ, ଗୋଡ଼ଖଡ଼ୁ, ବାଙ୍କିଆ, ପାହୁଡ଼, ପାଉଜି, ପା ପଦ୍ମ, ଝୁଣ୍ଟିଆ ଓ ଚୁଡ଼ୁଲି ଲଗାଇ, କିଏ ବା ପିନ୍ ପିନ ଶାଢ଼ୀ, ଫ୍ରକ୍ର ଉପ୍ଆର, ସାୟା, ବ୍ଲାଉଜ ପିନ୍ଧି ଘଠ ବେଣୀ, କଫାଳିଆ ବେଣୀ, ଖମ୍ଭ ଓ ପାନିଆ ଖୋସା ବେଣୀ ପାଇ, ହୁଇଙ୍ଗୀ ଝବକ ଝୁଲାଇ ଇୟର୍ ରିଙ୍ଗ୍, କାନଫାଶ, ଫୁନ୍, ତାଟଙ୍କ, ନେକ୍ଲେସ, ଅର୍ମଲେଟ, ରିଙ୍ଗ, ବ୍ଲୁଲ ଲଗାଇ, ବାଟା ଚପଲ, ହାଇହିଲ୍ ଜୋତା ମାଡ଼ି ମା ମାଉସୀଙ୍କ ଆଗରେ, ସଙ୍ଗାତ କଡ଼ରେ, ମଡର ହାତ ଧରି, ମାହାର୍ଦ୍ଦ କାନ୍ଧରେ ହାତ ପାରି, ମିତକୁ ଅନାଇ, ସଙ୍ଗା ମାଣିକ ଠାରି, କାନ୍ଥ ବାଡ଼କୁ ଅଜଳ, ବରକନ୍ୟାଙ୍କୁ ହେଜି ହେଜି— ଠିଆ ହୋଇଛନ୍ତି, ବସିଛନ୍ତି, ହସୁଛନ୍ତି, ମୁହଁ ବୁଲେଇଛନ୍ତି—କିନ୍ତୁ ନ ହେଲେ ବେଦୀ ଉପର ବର କନ୍ୟାଙ୍କୁ ଅଥବା ଜମା ହୋଇଥିବା ମରଦବୁଢ଼ାଙ୍କୁ ଗୃହୁ ଛନ୍ତି । ଏ ସବୁ ହେଉଛି ବଡ଼ସଥିଲି ମାଇପିଙ୍କ କଥା କିନ୍ତୁ ବଧବା ବୁଢ଼ୀ, ଧାଙ୍ଗଡ଼ୀମାନେ କେବଳ ବର କନ୍ୟାଙ୍କ ଏକ ଲକ୍ଷ୍ୟରେ ଚାହିଁଛନ୍ତି ଓ ସେମାନଙ୍କ ଶୁଭ ମନାସୁଛନ୍ତି ।

ବାହୁଘର ସରିଲା । ବରକନ୍ୟା ବନ୍ଦାପନା ହେଲେ । ଅଳଙ୍କାର, ଠ ପୀଢ଼ାରେ କୁଶିଆ ନଈନଙ୍କ ଅଦର ଅଭ୍ୟର୍ଥନା, ମାନ ମର୍ଯ୍ୟାଦା ଦ୍ୱାସ୍ତ ହେଲା. ବାପରେ ଖୁସି ଖୁସି ଚର୍ଚ୍ଚା ! ନାନାପ୍ରକାରର ଅନ୍ନ, ବ୍ୟଞ୍ଜନ, ମିଷ୍ଟାନ୍ନ ଖିର ଦ୍ରାକ୍ଷ, ପିଠାପଣା ପରଷା ଲାଗିଛି । ସମସ୍ତେ ଖାଇ ପିଇ ଖୁସି ।

କଦା ଅରସିକସ୍ୟ ସରସ ବଚନଂ ଶିରସି ମା ଲିଖ ମା ଲିଖ । ତୁମେ ଯେତେ କହ, "ତାହାର ହେଉଁ ଚଳା ନା', ଗୁଣ୍ଡର ପାଇଁଷରେ ଚାଲା । କେତେକ ଅସହ୍ୟଣୀ ମାଇକିନିଆ ନିଜ ନିଜ ଭିତରେ ଖାଲି ଭୋଜି ଉପରେ ବାହାଘର କଥା ଚଳାଇ ବସିଲେ, କିଏ କହିଲା "ଏ କି ବାହାଘର ମ ଖଣ୍ଡିକ ନୁହେଁକି ପେଣ୍ଡିକ ନୁହେଁ । ଜଳପାନ କମିକ ଅଣ୍ଡିରା ଚଣ୍ଡିରା ! ଦେଣାଦାଣି ମୁହଁ ଲୁଚାଇବାକୁ ନାହିଁ । ବାଜୁନ କହ କାହାକୁ ନାହିଁ ! ସମସ୍ତଙ୍କ ତୁସ ତୁସ ମୁହଁରେ ଜଳ ଜଳ କରି ଯିବେ । କରଣ ଘର ବାହା ସ୍ରଷ୍ଟି ପାଇ ଦିନ ପଛରେ ହୋଇଯାଏ । କର୍ଣ୍ଣ ନା ଦଧ୍ୟାରେ ସବୁ ଶେଷ ! କିଏ କହିଲା. "ସୁତସ୍ତର ଉଠା ଖାଲି ମୁଣ୍ଡ ପିଟିହେଲା ସୁଦ୍ଧ ସ୍ୟାଦ୍ଧ କେତେ କଣ ଦକ୍ଷିଣା ପାନ୍ତି । ଅଠର ଅଣ ପଇସାରେ କରମକାଣ୍ଡ ସରି ହୋଇଗଲା ! କହନ୍ତି ପରା ବାହୁଘର ନୁହେଁ, ବୁଢ଼ାଘର । ଲମିଲା ତାହାଘର ଯେତେବେଳେ ସେତେବେଳେ ପଇସା ନ ଥାଇ ଗଣ ପଣ କରି ହେବ । କିଛି ନୁହଁମ, ବଇଳ, ଖାଲି ଅଦକ ଆଦର, ସିମିତ ସମିତ ହୋଇଗଲେ ଗଲା ।" ଅଉକେଣେ କହୁଥାଏ, "ହଁ, କାନ ଶୁଣିଲା, ଆଖି ଦେଖିଲା, ଏଣିକି କେତେ ନୂଆ ନୂଆ କଥା ହେବ । ଯେଉଁଠି ମାଛ ଦେଲେ ନବେ ଖଣ୍ଡ ହେଉଥିଲା, ସେଇ ଷୋଳ କରଣ—ଯାହାଙ୍କ ନାଁ ଗଜ ଗଜପୁରାରେ ହେଉଥିଲା, ଯାହାର ଲାଗି ଗ୍ରାଜ୍ୟ ଚଳୁଥିଲା, ତାଙ୍କର ଅଦ୍ଧ ସବୁ ଭଅଣ ଲୋପ ମ, । କାଳ ଅଭ କଣ ଅଛି ? ତାଳ ଅମର କଣ ଥାଏ ? ବା ସୁଆଙ୍ଗ ଛଡ଼ା ସେଇଆଡ଼କ ନ ଦେଖାଇଲେ, ନ ଚଳେ । ଶେଷକୁ ପନିଅ ମା ବାର-ଭାଣୀ ଥାଇ କହିଲା, "ସାମ୍ନାଣୀଏ, ସବୁ ହେଲା ଯେ, ସେଥିକି କିଛି ନ

ଥିଲି । ଏଣିକି ଦିନକୁ ଦିନ ଖେଦେଇ ହେଉଛି, ସେଇଥିକି ସିନା ପଡ଼ୁଛି । ହୁଇ ଏ, ତାହୁଁ କରଣ ସୁଖ ଆଉ ଭଏ କଣ୍ଢେଇ···ଝିଅ ! !

ପାଠକମାନେ, ମୋର କୁହାର । ଆପଣମାନେ ଜୟ ହିନ୍ଦ ଭବନରେ ବିବାହ ଉତ୍ସବର ଦୃଶ୍ୟ ମନଶ୍ଚକ୍ଷୁରେ ବୋଧହୁଏ ଏକ ଲୟରେ ଦେଖି ଯାଉଥିଲେ । ମୁଁ ଗୋଟାଏ କଳକପାଉଁଶ ଭଲଲୋକ ହୋଇ ଆପଣମାନଙ୍କ ଆମୋଦ ପ୍ରମୋଦରେ ବାଧା ଦେଲି ବୋଲି କ୍ଷମା କରିବେ । ମୋ ଗାଳ୍ପଟା ଏଇ ପର ପଲଟିରେ ଶେଷ ହେଉଛି । ତେଣୁ ବିଷୟର ଖୁଣ୍ଟି ନାଟି ପରୀକ୍ଷାରେ ଯାହା ତ୍ରୁଟି ଦେଖିଥିବେ, ତାହା ନିଜ ନିଜ ମହତ ଗୁଣରେ ଘୋଡ଼ାଇ ପକାଇବେ ବୋଲି, ଏ ମୂର୍ଖ-ଟାର ଦେଶର ସାମାଜିକ ଢଙ୍ଗ ତାଙ୍କୁ ତଳ କ୍ଷମାଭିକ୍ଷା ନମାଗିବାକୁ ଦିଏ ନାହିଁ ।

ଯେଉଁ ବର୍ଷ ଯେଉଁ ମାସ, ଯେଉଁ ଦିନ, ଯେତେ ଘଣ୍ଟା, ଯେତେ ମିନିଟ, ଯେତେ ସେକେଣ୍ଡରେ ଶ୍ରୀମାନ ବିପିନ ବିହାରୀ ଓ କୁମାରୀ ବାସନ୍ତୀଙ୍କର ବିବାହ ଲଗ୍ନ ଧାର୍ଯ୍ୟ ଥିଲା, ଠିକ୍ ସେମିତି ଯୋଗ ପଡ଼ୁଛି, ସେହି ବର୍ଷ, ମାସ, ଦିନ ଘଣ୍ଟା, ମିନିଟ, ସେକେଣ୍ଡ ଓଗେର, ଶ୍ରୀମାନ ମୋହିନୀ ମୋହନ ଓ କୁମାରୀ ପ୍ରେମଲତାଙ୍କ ଉପରେ ପଞ୍ଚଶର ପଡ଼ିବା ପାଇଁ ଧାର୍ଯ୍ୟ ହୋଇଛି । ଏଭିତର କଥାଟା କିଛି ବୁଝିବାର ବା ଜଣା ଅଛି ? ଭଗବାନର କାର୍ଯ୍ୟ କାରଣ ବୁଝିବା ତ ମିଛ ନୁହେଁ । ତେବେ ମୂଳରୁ ଚୂଳ ପର୍ଯ୍ୟନ୍ତ, ଆମର ହୁଇଟି ଯୋଡ଼ା ହେବାକୁ ଥିବା, ଏ ଦୁଇ ଅଭି-ସାରୀ ଅଭିସାରୀଙ୍କ ଗତ ଯାଇଥିବା ଜୀବନର ବେଉଷାରୁ ବେଶ୍ ଠଉରାଇ ହେବ । ଗାନ୍ଧୀ ବୁଡ଼ାର କଥା କେଣ୍ଟି ବାବୁ କିଏ ବିଶ୍ବାସ କରିବ ? ଦେଖଟା ଯାଉଛି ବୁଢ଼ା ବାପା ସେ । ନ ଦେଖି ଜଣେ ସେ କହିଥିଲା, ଅଗିଲା ବାତ୍ୟା ପାଣି ପଡ଼ିଥିବା କେଣ୍ଟା କେଣ୍ଟୀଙ୍କର ଓ ପିଛିଲା ବର କନ୍ୟାଙ୍କର ରାଶି ନକ୍ଷତ୍ର ବିଲକୁଲ ବରାବର ।

ଘଣ୍ଟା ଘଣ୍ଟା, ମିନିଟ ଘଣ୍ଟା ଠିକ୍ ଯୋଗ ବାନ୍ଧି ଚାଲିଛନ୍ତି । ଜୟହିନ୍ଦ ଭବନର ବେଦୀ ଉପରେ ବିପିନ ବାବୁ ଓ ବାସନ୍ତୀ ଦେବୀ-

ଙ୍କର ଏଣେ ହାତଗଣ୍ଠି ହେଉଥିବ, ଠିକ୍ ସେହି ଅମୃତ ବେଳାରେ ମୋହିନୀ ବାବୁ ଓ ପ୍ରେମଲତାଙ୍କ ଉପରେ ପଡ଼ିଲା ଗଇଣ୍ଠା ଚଦର, ବିବେକାନନ୍ଦ ବାବୁଙ୍କ ଘର ବେଦୀ ଉପରେ । ଏ କମିଶନ କଥା, ବିବେକାନନ୍ଦ ବାବୁ ତ ପୁଅକୁ ବିବାହ କରାଉଛନ୍ତି ଏଣେ, ତାଙ୍କ ଘରେ କନ୍ୟାଦାନ କରୁଛି କିଏ ? ତାହିଁକି କନ୍ୟାର ମାମୁ ଘୋଷ ସୁଦ୍ଧା ବସିଛନ୍ତି ।

ଏ ଶୁଭ ବିବାହରେ ବିଶେଷତ୍ୱ ଏତିକି । କଂଗ୍ରେସ ଦଳ ଦ୍ୱିଧା ହୋଇ ଦୁଇ ପକ୍ଷକୁ ଯାଇଛନ୍ତି ଦୁଇ ଗାନ୍ଧୀ ହୋଇ । ବିବେକାନନ୍ଦ ବାବୁଙ୍କ ଘରକୁ ଯେତେକ ଯାଇଛନ୍ତି, ସମସ୍ତେ ନିରାମିଷାଶୀ, ନିରାଡ଼ମ୍ବର ନିଷ୍କପଟ ଖଦଡ଼ୀ, ନିଜ କଥା ଭାଷୀ, ନିଷ୍ଠ କର୍ମୀ, ନିତ୍ୟ ଗାଉଁଲି ସାଥୀ, ନିର୍ଧନ ବନ୍ଧୁ, ନିଷ୍କାମ ଭାବରେ ଗାଁ ଲୋକଙ୍କ ପାଇଁ କାମ କରନ୍ତି—ଏ ସବୁ ହେଲେ ନିଖୁଣ ଗାନ୍ଧୀବାଦୀ । ଏମାନେ କାୟମନୋବାକ୍ୟରେ ଗାନ୍ଧୀଜୀଙ୍କୁ ମାନିବେ, ଗାନ୍ଧୀବାଦ ଘୋଷିବେ, ଗାନ୍ଧୀ ପରି ଗାଁ ଗଣ୍ଡାରେ ଆଶ୍ରମ ଖୋଲିବେ, ଗାନ୍ଧୀ କଥାରେ ଶିକ୍ଷ୍ୟ ତାଲିମ ଦେବେ, ଅନ୍ତର ମଧ୍ୟ ଗାନ୍ଧୀ ପରି ଅଣ୍ଟାରେ ସୂତା କାଟି ଲୁଗା ପିନ୍ଧନ୍ତି; ନିଜ ହାତରେ ଖେତ ଚାଷ କରନ୍ତି, ମହୁ ବୃକ୍ଷ, ଏଣ୍ଡି ବୃକ୍ଷ ରୋବୁ ପାଇଁ ହାତୀଆ ଘାସ ନିଜେ କରନ୍ତି, ଲୋକଙ୍କୁ କରାନ୍ତି । ନିଶା ନିବାରଣ, ଅସ୍ପୃଶ୍ୟତା ବର୍ଜନ, ଗ୍ରାମ ସଂଗଠନ, ଯନ୍ତ୍ର ଶିଳ୍ପ ମରଣ, କୁଟୀର ଶିଳ୍ପ ପ୍ରସାରଣ, ଖାଦ୍ୟ ବସ୍ତ୍ର ସ୍ୱାବଲମ୍ବନ ଓ ଶେଷରେ ସବର୍ଣ୍ଣ ଅସବର୍ଣ୍ଣ ବିବାହ ପ୍ରଚଳନ ଆଦି ଗାନ୍ଧୀବାଦୀଙ୍କର ଅଠେ ମଣିର ଧନ । ଏ ଶୁଭ ବିବାହ ଉପଲକ୍ଷରେ ଗାନ୍ଧୀଜୀଙ୍କ ଆଶୀର୍ବାଦ ସନ୍ଦେଶ ନେଇ ଆସିଥିଲେ ଯେତେ ନେତା ନେତ୍ରୀ, ସେମାନଙ୍କ ମଧ୍ୟରୁ ମୁଖ୍ୟ ଚୌଧୁରୀ ଘୋଷ ବନ୍ଧୁ, ହେତା କୃପାସିନ୍ଧୁ, ଅବ୍ୟର୍ଷି ହରିହର, କର୍ମୀ ରତ୍ନାକର, ଲୋକପୂଜ୍ୟା ରମାଦେବୀ, ଶିକ୍ଷ୍ୟା ସୁନ ମଣି ଦେଇଥିଲେ ଶୁଭାଶୀଷ ନବ ଦମ୍ପତିଙ୍କୁ ।

ଅନ୍ୟ ମାନ୍ୟଗଣ୍ୟ ମହାମାନ୍ୟ ସ୍ୱ ସ୍ୱ ଗୁଣେ ଧନେ ମାନେ ବଳୀୟାନ, ସ୍ୱସ୍ତ୍ର ଶାସନରେ ପ୍ରତାପୀ, ମଧ୍ୟତାପୀ, ମମତ୍ୱାତାପୀ, ସ୍ୱସ୍ତ୍ର

ସବୁକୁ ନର୍ତ୍ତାଓଡ ସରଳଧ୍ରୁ, ସଙ୍ଗୀତ-ବାରିଧି, ଅନ୍ୟ ବ୍ୟକ୍ତି ଖଦଡ଼ର ପ୍ୟାଣ୍ଟ ସର୍ଟ, ବୁସସାର୍ଟ ହ୍ୱାର୍ଲ୍ୟାନୀ ସାର୍ଟ ଓ ଗାନ୍ଧୀ ଟୋପି ପିନ୍ଧି ମୋଟର, ସାଇକେଲ୍ ଓ ରିକସା ଚଢ଼ି ଅନେକ ଆସିଥିଲେ ଜୟନ୍ତୀ ଭବନକୁ ନିମନ୍ତ୍ରଣ ପାଇ । ସେ ସମସ୍ତେ ଚନ୍ଦନରେ, ପାନରେ, ବଡ ସିଗାରେଟରେ, ସେ ସ୍ୱଟଇଲ ଟେବୁଲରେ ଚର୍ଚ୍ଚିତ ହେଲେ, ସଂଗୀତ-ଶୁଣିଲେ, ନୃତ୍ୟ ଦେଖିଲେ, ଖୁବ ହସିଲେ ହସାଇଲେ, ପେଟ ପୂରାଇ ଖାଇଲେ ଓ ମନ ଖୁସିରେ ନିଜ ନିଜ ଘରକୁ ଫେରିଲେ ।

ଏମିତିକା ନାଁ ଡାକ ବାହୁଡ଼ାଘର କେବେ ହୋଇଥିଲା କି ନା ସନ୍ଦେହ । ତା ନ ହୋଇଥିଲେ, ସମାଜରେ ଗ୍ରାଣ୍ଟି ଅଟିକା ପତ୍ର ଅକ୍ଷରରେ ଛପା ହୋଇ କଥାଟା ପଦାରେ ପଡ଼ି ଥାନ୍ତା ! ସାର କଥା ଟା ପସ୍, ଅସାର ହୋଇଥିଲେ ଜସ୍ତ କୃତ୍ରିମ ପିଠା ହୋଇଥାନ୍ତା ! ପ୍ରାଚୀନତା, ଅର୍ବାଚୀନତା, ସାତ୍ତ୍ୱିକତା ନୈତିକତାର ଅବସ୍ଥିତି ଏକାଧାରରେ ହେଲା । ବୈଦିକ ଯୁଗର ସାମାଜିକ ଜାତି ବିଭାଗ ଯେପରି କାଳକ୍ରମେ କଠୋରତା ଲାଭ କରି ନାନା ବ୍ୟଭିଚାରର ଆଶ୍ରୟ ଗ୍ରହଣରେ ବୃଦ୍ଧି ଲାଭ କଲା ଓ ତାର ପରିଣାମରେ ଶ୍ରେଣୀ ସଂଘର୍ଷ ଜନ୍ମିଲା ଏ ଜାତିଟିକୁ ମହାଜ ତକ ପ୍ରାୟ ବାରଶହ ବର୍ଷ ବୈଦେଶିକ ମାନଙ୍କର ଶାସନାଧୀନ କରି ଜାତିର ଏକତା ଏବଂ ହିନ୍ଦୁର ସର୍ବସ୍ୱ ଧର୍ମ-ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଫଳକୁ ବିନଷ୍ଟ କରି ଯେତେବେଳେ ବିଶ୍ୱ ପ୍ରଗତିର ନିମ୍ନକୁ ପକାଇ ଦେଇଛି ଏ ଦେଶକୁ; ସେତିକିବେଳେ ଦେଶର, ଜାତିର ଓ ଓ ସମାଜର ବିସ୍ତର, ବୁଦ୍ଧି ଓ ବିବେକ ଖୋଲି ଦେବାକୁ ଆସିଛି ଯୌବନର ସାଥୀ—ବିପ୍ଳବ ।



Printed by B. K. Kar, B. A.
at the Saraswata Press, Cuttack—1954.